# ସାହିତ୍ୟ, ସମାଜ ଓ ସଂସ୍କୃତି

**ରଚନା : ଇନ୍ଦୁଭୂଷଣ କର**

ପ୍ରଥମ ମୁଦ୍ରଣ : ୧୯୮୦
ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ : ୨୦୧୫, ଦୋଳପୂର୍ଣ୍ଣିମା

ପ୍ରକାଶକ
ଇମେଜ ପବ୍ଲିକେଶନସ୍ ©
୪୩୨୩ ସି, ଲୁଇସ୍‌ରୋଡ, ଭୁବନେଶ୍ୱର

ମୁଦ୍ରଣ : ଦିବ୍ୟ ମୁଦ୍ରଣୀ
୫୮/୬୦, ଦିବ୍ୟବିହାର,
ସାମନ୍ତରାପୁର, ଭୁବନେଶ୍ୱର -୨

ପ୍ରଚ୍ଛଦ ପରିକଳ୍ପନା : ବିଭୁପ୍ରସୂନ

ମୂଲ୍ୟ : ଟ.୧୫୦/-



# Sahitya, Samaj & Sanskriti

**Author : Indubhusan Kar**

First Edition : 1980
Revised Second Edition : 2015, Dola Pumima

Publisher :
Image Publications
4323 C, Lewis Road, Bhubaneswar

Printed at :
Divya Mudrani
58/ 60, Divya vihar
Samantrapur, Bhubaneswar -2

Cover Design : Bibhuprasuna

Price : ₹ 150/-

# ଉତ୍ସର୍ଗ

ଯାହାଙ୍କର ଅଗାଧ ସ୍ନେହ ଓ ପ୍ରେରଣା ମୋତେ
କଲମ ଧରି ଶିଖାଇଛି ସେ ମୋର ଆରାଧ୍ୟ
ପିତା ସ୍ୱର୍ଗତ ଯୋଗେନ୍ଦ୍ର ନାଥ କରଙ୍କ
ସ୍ମୃତି–ଉଦ୍ଦେଶ୍ୟରେ
ଭକ୍ତି–ଅର୍ଘ୍ୟ ।



"ମୁହିଁ ସେ ସର୍ବଭୂତ ବାନି । ଅନ୍ତର ବାହାରେ ପ୍ରକାଶି ॥
ଧରଇ ଆତ୍ମା-ରୂପେ ସର୍ବ । କେ ଜାଣିପାରେ ମୋହ ଭାବ ॥"

ଭକ୍ତକବି ୰ ଜଗନ୍ନାଥ ଦାସଙ୍କ :

**ଶ୍ରୀମଦ୍‌ଭାଗବତ(ଏକାଦଶ ସ୍କନ୍ଧ)**

ପଞ୍ଚଦଶ ଅଧ୍ୟାୟ

# ନାନ୍ଦୀମୁଖ

ସଂସ୍କୃତି ହେଉଛି ପ୍ରବହମାନ ଜନଜୀବନ ଧାରାରେ ଯାହା କିଛି ମୂଲ୍ୟବାନ ପ୍ରାଣବନ୍ତ ଓ ସୃଷ୍ଟିଶୀଳ ତାହାରି ଅନ୍ୟ ନାମ । ସଂସ୍କୃତି ସେଇ ଶକ୍ତି ଯାହା ଗୋଟିଏ ସମାଜକୁ ତା'ର ନିର୍ଦ୍ଦିଷ୍ଟ ସ୍ୱରୂପ ଦିଏ, ବ୍ୟକ୍ତି-ମୂଲ୍ୟବୋଧକୁ ଅନେକ ପରିମାଣରେ ନିୟନ୍ତ୍ରିତ କରେ ଏବଂ ଅନ୍ୟ ସମାଜଠାରୁ ତା'ର ସ୍ୱାତନ୍ତ୍ର୍ୟ ଓ ବୈଶିଷ୍ଟ୍ୟକୁ ପ୍ରତିପାଦିତ କରେ । ପରମ୍ପରା ଓ ଐତିହ୍ୟ ସଂସ୍କୃତିର ବାହକ । ସାହିତ୍ୟ, କଳା, ନୃତ୍ୟ, ସଙ୍ଗୀତ, ଜୀବନଧାରଣର ପରମ୍ପରା ଓ ପ୍ରଣାଳୀ ଏ ସବୁର ନିର୍ଯ୍ୟାସ ନେଇ ଗଢ଼ାହୁଏ ସଂସ୍କୃତି । ଅନ୍ୟ ପକ୍ଷରେ ବ୍ୟକ୍ତିର ବ୍ୟକ୍ତିତ୍ୱ ଓ ସାମାଜିକ ବ୍ୟବହାର, ସମାଜର ସ୍ଥିତି, ଦୃଢ଼ତା ଓ ମୂଲ୍ୟବୋଧ ସଂସ୍କୃତିର ଶକ୍ତି, ଉଜ୍ଜ୍ୱଳତା ଦ୍ୱାରା ହିଁ ପ୍ରତିଭାତ ହୁଏ ।

ବେଳ ଥିଲା ଯେତେବେଳେ ସଂସ୍କୃତି କହିଲେ ପରମ୍ପରାକୁ ହିଁ ବୁଝାଯାଉଥିଲା । ଗୋଟିଏ ସମାଜର ସଂସ୍କୃତି ତା'ର ପ୍ରାଚୀନ ମନ୍ଦିର, ଇତିହାସ, ସାହିତ୍ୟ, ପୋଥି କିମ୍ବା ତାମ୍ରପତ୍ର ଜରିଆରେ ମାପ ହେଉଥିଲା । କିନ୍ତୁ ଧୀରେଧୀରେ ସମାଜତାତ୍ତ୍ୱିକ ଦୃଷ୍ଟିକୋଣରୁ ଜନଜୀବନର ପରମ୍ପରା ଓ ବର୍ତ୍ତମାନର ଆଲୋଚନା ସଂସ୍କୃତିର ପରିବେଶ ଭିତରକୁ ଆସିଲା ଏବଂ ଜରାଜୀର୍ଣ୍ଣ କଳା କୁଶଳର ନିଦର୍ଶନ – ଭଗ୍ନ ମନ୍ଦିର କି ପୋଥି ଭିତରେ ଖାଲି ସଂସ୍କୃତି ନ ଖୋଜି ସମସାମୟିକ ଚଳଣି, ଜୀବନ୍ତ ମଣିଷଙ୍କର ଜୀବନଧାରା, ରୁଚି, ମୂଲ୍ୟବୋଧ ଏ ସବୁ ପ୍ରତି ଦୃଷ୍ଟି ଦିଆଗଲା । ଯାହା ଫଳରେ ସଂସ୍କୃତିର ସଂଜ୍ଞା ହେଲା ବ୍ୟାପକ ଓ ଅଧିକତର ନିର୍ଦ୍ଦିଷ୍ଟ ।

ଆଲୋଚିତ ପୁସ୍ତକଟି କୌଣସି ନିର୍ଦ୍ଦିଷ୍ଟ ସମାଜର ସଂସ୍କୃତି ଉପରେ ଆଧାରିତ ନୁହେଁ । ଅନେକ ଗୁଡ଼ିଏ ପ୍ରବନ୍ଧ ଅବଶ୍ୟ ଓଡ଼ିଶାର ସାହିତ୍ୟ (ଫକୀରମୋହନ, ମୃତ୍ୟୁଚେତନା) ଓଡ଼ିଆ ସଂସ୍କୃତି ସମ୍ପର୍କରେ । କିନ୍ତୁ ତା' ସହିତ ଆଲବେୟର କାମ୍ୟୁ, ସାହିତ୍ୟ ଓ ରାଜନୀତି, ସାହିତ୍ୟ ଓ ବାସ୍ତବତା, ଭାରତୀୟ ଜାତିପ୍ରଥା ଇତ୍ୟାଦି ସମ୍ପର୍କରେ ମଧ୍ୟ ପ୍ରବନ୍ଧ ସନ୍ନିବେଶିତ ହୋଇଛି । ପ୍ରବନ୍ଧଗୁଡ଼ିକ ଅଧ୍ୟୟନ ଓ ଚିନ୍ତନର ସ୍ୱାକ୍ଷର ବହନ

କରିଛନ୍ତି । କେତେଗୁଡ଼ିଏ ବିଷୟ କିନ୍ତୁ ଏଡ଼େ ବ୍ୟାପକ୍ , ସେଗୁଡ଼ିକର ପରିସର ମଧ୍ୟରେ ଯଥୋଯୁକ୍ତ ଆଲୋଚନା ଅତ୍ୟନ୍ତ ଆୟାସାଧ୍ୟ ଓ ପ୍ରାୟ ଅସମ୍ଭବ । ଏମିତି ଗୋଟିଏ ଗୋଟିଏ ବିଷୟରେ ଗୋଟିଏ ଗୋଟିଏ ବହି ଲେଖା ହେବା କଥା । ସୁତରାଂ ମନେହୁଏ ଆଲୋଚନାରେ ପରିସର ଆହୁରି ନିର୍ଦ୍ଦିଷ୍ଟ ଓ ସୀମିତ କରିଥିଲେ ଆଲୋଚନା ଅଧିକ ସୁସଂହତ ଓ ଫଳପ୍ରସୂ ହୋଇପାରିଥାନ୍ତା । ଲେଖକ ଆଧୁନିକ ସମାଜରେ ମୂଲ୍ୟବୋଧର ବିପର୍ଯ୍ୟୟ ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି । ସମସାମୟିକ ସାଂସ୍କୃତିକ ଅବକ୍ଷୟ ସମ୍ପର୍କରେ ସେ ସଚେତନ । ଏହାର ସାମାଜିକ, ଅର୍ଥନୈତିକ, ରାଜନୈତିକ କାରଣ ସମ୍ପର୍କରେ ବୋଧହୁଏ ଅଧିକ ଆଲୋଚନାର ଆବଶ୍ୟକତା ଥିଲା । ଏ ଅବକ୍ଷୟର ଧାରା କେବଳ ପାଶ୍ଚାତ୍ୟ ଦେଶର ସମାଜମାନଙ୍କରେ ନୁହେଁ, ଆମ ନିଜ ଦେଶ ଓ ପ୍ରଦେଶର ସଂସ୍କୃତିରେ ମଧ୍ୟ ଆଜି ସୁସ୍ପଷ୍ଟ । ଏଇ ପରିପ୍ରେକ୍ଷୀରେ ସଂହତି, ସାମାଜିକ ଐକ୍ୟ ଓ ନୈତିକ ମୂଲ୍ୟବୋଧର ଆବଶ୍ୟକତା ଓ ଅପରିହାର୍ଯ୍ୟତା ସମ୍ପର୍କରେ ଲେଖକ ସଚେତନ । ବୈଦିକ ଯୁଗର ମୂଲ୍ୟବୋଧ, ବେଦର ଐକ୍ୟ ଓ ସମନ୍ୱୟ ପ୍ରତି ଦୃଷ୍ଟିଭଙ୍ଗୀ ପାରମ୍ପାରିକ ସମାଜରେ ମୂଲ୍ୟବୋଧର ପ୍ରଚଳନ ସମ୍ପର୍କରେ ସମାଲୋଚନା କରିଛନ୍ତି । ଅନ୍ୟ ପକ୍ଷରେ ଦ୍ରୁତ ସାମାଜିକ ଅର୍ଥନୈତିକ ପରିବର୍ତ୍ତନ ମଧ୍ୟରେ ପ୍ରାଚୀନ ମୂଲ୍ୟବୋଧ ଯେ ସଂପୂର୍ଣ୍ଣ ଭାବରେ ଅତୁଟ ରହିପାରିବ ଏହା ଆଦୌ ସମ୍ଭବ ନୁହେଁ । ସୁତରାଂ ପରିବର୍ତ୍ତନଶୀଳ ସମାଜରେ ଶିକ୍ଷା ଓ ସଂସ୍କୃତିର ନବମୂଲ୍ୟାୟନର ଆବଶ୍ୟକତା ସମଧିକ । ଆଜି ଶିକ୍ଷା, ସମାଜର ଶ୍ରେଣୀସଂଘର୍ଷ, ରାଜନୀତି, ସାହିତ୍ୟ ଏ ସବୁକୁ ଅଲଗା ଅଲଗା କରି ଦେଖିବା ଆଉ ସମ୍ଭବ ନୁହେଁ । ଏଗୁଡ଼ିକ ପରସ୍ପର ଉପରେ ପ୍ରଭାବ ପକାଇଥାଆନ୍ତି । ତେଣୁ ସେଥିପ୍ରତି ଏକ ସାମଗ୍ରୀକ ଦୃଷ୍ଟି ସର୍ବାଦୌ ଆବଶ୍ୟକ ।

ଲେଖକ ଅନେକ ଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ବିଷୟର ଉପସ୍ଥାପନା କରିଛନ୍ତି ଓ ସେଗୁଡ଼ିକ ପ୍ରତି ଏକ ଦାୟିତ୍ୱପୂର୍ଣ୍ଣ ଦୃଷ୍ଟିଭଙ୍ଗୀ ପ୍ରଦର୍ଶନ କରିଛନ୍ତି । ପାରମ୍ପରିକ ମୂଲ୍ୟବୋଧ, ସଂହତି ଓ ନୈତିକତା ପ୍ରତି ସହାନୁଭୂତି ତାଙ୍କର ରଚନାରେ ସୁସ୍ପଷ୍ଟ । ପୁସ୍ତକଟିର ସଫଳତା କାମନା କରୁଛି ।

ସୀତାକାନ୍ତ ମହାପାତ୍ର

ସେପ୍ଟେମ୍ବର ୩୧,୧୯୮୦

# ସୂଚୀପତ୍ର

# ସାହିତ୍ୟ

ଯୁଗେ ଯୁଗେ ସାହିତ୍ୟ, ମଣିଷକୁ ଅନିର୍ବଚନୀୟ ଆନନ୍ଦ ଦେଇ ଆସିଛି । ଆନନ୍ଦ ଦେବା ସଙ୍ଗେସଙ୍ଗେ ଦିବ୍ୟଚେତନା ଓ କଳ୍ପନା ଶକ୍ତିକୁ ଜାଗ୍ରତ ଓ ପରିପୁଷ୍ଟ କରିଆସିଛି । ସେହି ଦୃଷ୍ଟିରୁ, ସାହିତ୍ୟ-ପଠନ ଓ ଅନୁସରଣ କରି ପ୍ରତ୍ୟେକ ନାଗରିକ ଏହାକୁ ଏକ ସାମାଜିକ କର୍ତ୍ତବ୍ୟ ଭାବେ ପାଳନ କରିବା ଏକାନ୍ତ ଆବଶ୍ୟକ ।

- - - - - - - - - - - - - - - -



# ଫକୀରମୋହନ ସାହିତ୍ୟରେ "ଲୋକ ଚରିତ୍ର ଚିତ୍ରଣ"

ଊନବିଂଶ ଶତାବ୍ଦୀର ଶିଳ୍ପ ବିପ୍ଳବ ପରେ ପରେ ପୃଥିବୀର ନାନା ଦେଶରେ ବିଭିନ୍ନ ପରିବର୍ତ୍ତନ ଦେଖାଗଲା – ଯାହାଫଳରେ ସଭ୍ୟତା ସଂସ୍କୃତିର ରୂପ କ୍ରମେକ୍ରମେ ନୂତନ ଆକାର ଧାରଣ କରିବାକୁ ଲାଗିଲା । କି ସାହିତ୍ୟ, କି ରାଜନୀତି, କି ଧର୍ମ ସବୁ କ୍ଷେତ୍ରରେ ଚିନ୍ତାର ନୂତନ ପରିବର୍ତ୍ତନ ଦେଖାଗଲା । ଠିକ୍ ସେତିକିବେଳେ ସାରା ଓଡ଼ିଶାର ଜାତୀୟ ଜୀବନ ମ୍ରିୟମାଣ ତଥା ସଂକଟାପନ୍ନ ହେବାକୁ ଯାଉଥିଲା । ଊନବିଂଶ ଶତାବ୍ଦୀର ଏହି ସନ୍ଧିକ୍ଷଣରେ ଉତ୍କଳର ସାମାଜିକ, ରାଜନୈତିକ, ତଥା ଜାତୀୟ ସ୍ଥିତି ଅତି କରୁଣ ଓ ନିରାଶଜନକ ଥିଲା । ଏତିକିବେଳେ ଇଂରାଜୀ ଶାସନର ଆଧିପତ୍ୟ ପୂରାପୂରି ଓଡ଼ିଶାରେ ବିସ୍ତାରଲାଭ କରିଥିଲା, ଏବଂ ଇଂରେଜମାନଙ୍କର ଖ୍ରୀଷ୍ଟଧର୍ମର ପ୍ରଚାର ତଥା ସେମାନଙ୍କର ଶିକ୍ଷା ଓ ସଂସ୍କୃତି, ଭାରତୀୟ ସଭ୍ୟତା ଓ ସଂସ୍କୃତିକୁ ଖୁବ୍ ପ୍ରଭାବିତ କରୁଥିଲା । ଏହି ସମୟରେ ବୈଦେଶିକ ପ୍ରଭାବରେ ପ୍ରଭାବିତ ହୋଇ ଓଡ଼ିଶାର ଭାଷା ଓ ସାହିତ୍ୟ ଅନ୍ତଃସାରଶୂନ୍ୟ ଓ ମ୍ରିୟମାଣ ହେବାକୁ ଯାଉଥିଲା । ଜାତୀୟ ସାହିତ୍ୟ ଇତିହାସର ଏହି ସଂକଟାପନ୍ନ ଅବସ୍ଥାରେ ଯୁଗସ୍ରଷ୍ଟା ଫକୀରମୋହନଙ୍କ ଆବିର୍ଭାବ । କ୍ରମେ ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଦୂରଦ୍ରଷ୍ଟା ଔପନ୍ୟାସିକ ଫକୀରମୋହନ ଓଡ଼ିଆ ମୁହଁରେ ଭାଷା, ହୃଦୟରେ ରସ, ମନରେ ନୂତନ ଉଦ୍ଦୀପନା ଓ ଆଦର୍ଶ ଭରି ଦେଲେ । ତେଣୁ ଓଡ଼ିଆ ଭାଷା ଓ ସଂସ୍କୃତିର ସେ ହେଲେ ରକ୍ଷକ । କେବଳ ଏତିକି ନୁହେଁ, ସେ ଥିଲେ ଉତ୍କଳର ଶ୍ରେଷ୍ଠ ଜାତୀୟ କବି ଓ କଥାକାର ମଧ୍ୟ । ତତ୍କାଳୀନ ହାହୁତାଶମୟ ଓଡ଼ିଆ ଜୀବନରେ ଫକୀରମୋହନ ନୂତନ ପ୍ରାଣ ସଂଚାର କଲେ । ଓଡ଼ିଆର ଜାତୀୟ ପ୍ରାଣକୁ ସଚେତନଶୀଳ କରିବା ସଙ୍ଗେସଙ୍ଗେ ନୂତନ ଆଦର୍ଶ ଓ ଭାଷାରେ ତାକୁ ପୁନର୍ଜୀବିତ କରିଥିଲେ । ଓଡ଼ିଶାର ସାମାଜିକ, ରାଜନୈତିକ, ତଥା ଜୀବନ୍ତ ଗଣ-ଜୀବନର ଚିତ୍ର ତାଙ୍କ ସାହିତ୍ୟରେ ନିଖୁଣ ଭାବରେ ଚିତ୍ରିତ । ଫକୀରମୋହନ କେବଳ ଶ୍ରେଷ୍ଠ ଔପନ୍ୟାସିକ

ନୁହନ୍ତି, ଶ୍ରେଷ୍ଠ ସମାଜ ସଂସ୍କାରକ ମଧ୍ୟ । ତାଙ୍କ ସାହିତ୍ୟରେ ଓଡ଼ିଶାର ଜାତୀୟ-ଜୀବନର ଚିତ୍ର ଅତି ଜୀବନ୍ତ ଓ ହୃଦୟସ୍ପର୍ଶୀ ହୋଇ ଉଠିଲା । ସମାଜର ସାମୂହିକ କଲ୍ୟାଣ ପାଇଁ ସାହିତ୍ୟକୁ ସେ ଶ୍ରେଷ୍ଠ ମାଧ୍ୟମ ବୋଲି ଧରିଥିଲେ ଏବଂ ଏହି ସାହିତ୍ୟରେ ବିଭିନ୍ନ ଶ୍ରେଣୀର ଚରିତ୍ର ସୃଷ୍ଟି କରି ଉନ୍ନତ ସମାଜ ସଂସ୍କାରର ଗଭୀର ପ୍ରେରଣା ଦେବାକୁ ଚେଷ୍ଟା କରି ଦୁର୍ଦ୍ଦଶାଗ୍ରସ୍ତ ଓଡ଼ିଆଙ୍କ ସାମାଜିକ ଜୀବନ ଦେଖି, ତାଙ୍କ ପ୍ରାଣ ବହୁବାର ବ୍ୟାକୁଳ ଓ ଅଧୀର ହୋଇଉଠିଛି । ଓଡ଼ିଆର ଜାତୀୟ ପ୍ରାଣକୁ ସେ ଅନ୍ତର ସହିତ ଓ ଗଭୀର ମମତା ସହ ଅନୁଭବ କରିଥିବାରୁ ସେ ଜଣେ ଶ୍ରେଷ୍ଠ ଚରିତ୍ର-ଚିତ୍ରକର ହୋଇପାରିଛନ୍ତି । କେବଳ ଏତିକି ନୁହେଁ, ସେ ଆଧୁନିକ ଗଣସାହିତ୍ୟର ପ୍ରଥମ ପଥପ୍ରଦର୍ଶକ । ତେଣୁ ତାଙ୍କ ସାହିତ୍ୟରେ ଗଣର ଆସନ ଖୁବ୍ ଉଚ୍ଚରେ । ଏହି ଗଣ-ଚରିତ୍ରମାନଙ୍କରେ ପ୍ରକୃତ ଓଡ଼ିଆର ଜାତୀୟତା, ସଂସ୍କୃତି ଓ ଧର୍ମର ବିଶେଷତ୍ୱ ପରିଲକ୍ଷିତ ହୁଏ । ଏହାର ଜାଜ୍ୱଲ୍ୟମାନ ପ୍ରମାଣ ତାଙ୍କ ଚରିତ୍ର-ଚିତ୍ରଣ କରିବାର ଦକ୍ଷତା ଓ ମୌଳିକତାକୁ ଆଲୋଚନା କଲେ ସୁସ୍ପଷ୍ଟ ହୋଇ ଉଠିବ । ଉପନ୍ୟାସରେ ଚରିତ୍ର-ଚିତ୍ରଣ ଏକ ବିଶିଷ୍ଟ ଅଙ୍ଗ । ଔପନ୍ୟାସିକର ପ୍ରଥମ କର୍ତ୍ତବ୍ୟ ହେଉଛି ବାସ୍ତବ ଚରିତ୍ରକୁ ଉତ୍ତମରୂପେ ପର୍ଯ୍ୟବେକ୍ଷଣ କରିବା ଓ ତା' ସଙ୍ଗେସଙ୍ଗେ ଚରିତ୍ରଗୁଡ଼ିକର ଦୋଷ ଦୁର୍ବଳତା ଦର୍ଶାଇବା । ଅବସ୍ଥା ଓ ମାନସିକ ଦ୍ୱନ୍ଦ୍ୱର ପ୍ରଭାବରୁ ସମାଜରେ ବିଭିନ୍ନ ପ୍ରକାର ଚରିତ୍ର ସୃଷ୍ଟି ହୋଇଥାଏ ଓ ଜୀବନର ବିଭିନ୍ନ ବାଧାବିଘ୍ନ ଓ ଜଞ୍ଜାଳରେ ମଣିଷର ଚରିତ୍ର ନୂତନ ରୂପ ଧାରଣ କରେ । ତେଣୁ ଚରିତ୍ର-ଚିତ୍ରଣର ଦକ୍ଷତା ଓ ପାରିପାର୍ଶ୍ୱିକ ସାମାଜିକ ଅବସ୍ଥାର ଯଥାଯଥ ବର୍ଣ୍ଣନା କରିବାର କୌଶଳ ନଥିଲେ ଜଣେ କେବେ ବି ଶ୍ରେଷ୍ଠ ଔପନ୍ୟାସିକ ହୋଇପାରିବ ନାହିଁ । ତେଣୁ କଥାବସ୍ତୁକୁ ପାଠକ ସମାଜଆଗରେ ଥୋଇଦେଲେ ସେ ପ୍ରକୃତ ଯଥାର୍ଥ ଔପନ୍ୟାସିକ ହୋଇପାରେ ନାହିଁ । ତେଣୁ ଔପନ୍ୟାସିକକୁ ପ୍ରଥମେ ବାସ୍ତବ ଚରିତ୍ରର ଚିତ୍ରକର ହେବାକୁ ପଡ଼ିବ । କାରଣ ଚରିତ୍ର - ଚିତ୍ରଣ ହିଁ ଉପନ୍ୟାସର ମୁଖ୍ୟ ଆଧାର । ତେଣୁ - Henery Charles Duffies କହିଥିଲେ "It is only necessary to read a few typical masterpieces of prose, to read a few typical masterpieces of prose fiction to discover that essentials of the novel are in trite phase first character, second character and third character."

ବିଶ୍ୱସାହିତ୍ୟ ଆଲୋଚନାରୁ ଜଣାଯାଏ, ଚରିତ୍ର-ଚିତ୍ରଣର ଉତ୍କର୍ଷ ପ୍ରଥମେ ନାଟ୍ୟ ସାହିତ୍ୟରେ ଦେଖା ଯାଇଥିଲା । ଏଲିଜାବେଥ ଯୁଗରେ ନାଟ୍ୟ ସାହିତ୍ୟରେ ଚରିତ୍ର-ଚିତ୍ରଣ ବହୁଳ ପରିମାଣରେ ହୋଇଥିଲା । କିନ୍ତୁ ଭିକ୍ଟୋରିଆ ଯୁଗରେ ଏହି ଚରିତ୍ର-ଚିତ୍ରଣର ରୂପ ଅନେକ ପରିବର୍ତ୍ତିତ ହୋଇଥିଲା । ଯାହାଫଳରେ ଏହି ଯୁଗରେ ଉପନ୍ୟାସ-ସାହିତ୍ୟର ଉନ୍ନତି ଓ ଅଭିବୃଦ୍ଧି ଦ୍ରୁତଗତିରେ ହୋଇପାରିଥିଲା । ତେଣୁ ଭିକ୍ଟୋରିଆ ଯୁଗ ହିଁ ଉପନ୍ୟାସ-ଇତିହାସର ଏକ ସୁବର୍ଣ୍ଣଯୁଗ । ଫକୀରମୋହନଙ୍କ ସାହିତ୍ୟ ସାଧନାର

ଅଭିବୃଦ୍ଧି ଠିକ୍ ଏହି ସୁବର୍ଣ୍ଣ ଯୁଗରେ ହିଁ ଘଟିଥିଲା । ଊନବିଂଶ ଶତାବ୍ଦୀର ଶେଷ ବେଳକୁ ଫକୀରମୋହନ ଉପନ୍ୟାସ ଲେଖିବା ଆରମ୍ଭ କଲେ । ୧୮୯୭ରୁ ୧୯୦୦ ମଧ୍ୟରେ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ଉପନ୍ୟାସ ଛ'ମାଣ ଆଠଗୁଣ୍ଠ ଲିଖିତ ହୋଇଥିଲା । ଏହାପରେ ସେ ଲଛମା, ମାମୁ, ପ୍ରାୟଶ୍ଚିତ୍ତ ଲେଖିଥିଲେ । ଏତଦ୍‌ବ୍ୟତୀତ ତାଙ୍କ ଗଳ୍ପସ୍ୱଳ୍ପ, ଉତ୍କଳ ଭ୍ରମଣ ଓ ଅନ୍ୟାନ୍ୟ କେତେକ କବିତା ଶ୍ରେଷ୍ଠ ସାହିତ୍ୟ-ସମ୍ପଦ ହୋଇ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଉଜ୍ଜ୍ୱଳ ଓ ମହୀୟାନ କରିଅଛି ।

ଚରିତ୍ର-ଚିତ୍ରଣ କରିବାରରେ ଫକୀରମୋହନଙ୍କର ଏକ ନୂତନ ମୌଳିକତା ଓ ଦକ୍ଷତା ଥିଲା । ତେଣୁ ସେ ଓଡ଼ିଶାର ଅଦ୍ୱିତୀୟ ଶ୍ରେଷ୍ଠ ଔପନ୍ୟାସିକ । ପୂର୍ବ ଗିରାଚରିତ ପନ୍ଥାକୁ ଅନୁସରଣ ନକରି ଓଡ଼ିଶାର ଅତି ସାଧାରଣ ଜୀବନକୁ ନେଇ ସେ ଉପନ୍ୟାସ ରଚନା କରିଥିଲେ । ପୂର୍ବ ପ୍ରକାଶିତ ଓଡ଼ିଆ ଉପନ୍ୟାସର ନାୟକ ଓ ନାୟିକାମାନେ ଉଚ୍ଚ ବଂଶଜାତ ଓ ରାଜବଂଶୀୟ । ଔପନ୍ୟାସିକ ରମେଶଚନ୍ଦ୍ରଙ୍କ ''ପଦ୍ମମାଳୀ''ର ପ୍ରଧାନ ନାୟକ ଜଣେ ରାଜା ଏବଂ ରାମଶଙ୍କରଙ୍କ ବିବାସିନୀର ନାୟିକା କୁଜଙ୍ଗର ରାଜକନ୍ୟା । କିନ୍ତୁ ଜାତୀୟ ଔପନ୍ୟାସିକ ଫକୀରମୋହନ ଉଚ୍ଚ ବଂଶଜାତ ରାଜା ଓ ରାଜକନ୍ୟାର ଚରିତ୍ରକୁ ତ୍ୟାଗ କରି ଅତି ଜୀବନ୍ତ ସାଧାରଣ ଗ୍ରାମ୍ୟ ଚରିତ୍ରକୁ ନେଇ ଉପନ୍ୟାସ ଲେଖିଛନ୍ତି । ଗାଁ ମାମଲତକାର ଗାଁ ତନ୍ତିଆଣୀ, ଗାଁର ସରଳା ପତିଭକ୍ତିପରାୟଣା ସ୍ତ୍ରୀ ଓ ଗାଁର କଳିହୁଡ଼ି ବୁଢ଼ୀର ଚରିତ୍ର ଅତି ନିଖୁଣ ଓ ଜୀବନ୍ତ ଭାବରେ ସେ ଚିତ୍ରଣ କରିଛନ୍ତି । ରାଜଜେମାର ପ୍ରଣୟ, ସ୍ୱପ୍ନ, ବିରହ, ବେଦନା କିମ୍ବା ଅବାସ୍ତବ ଚରିତ୍ରର ରୂପରେଖ ଦେଇ ସେ ଲେଖିନାହାନ୍ତି । ଅତି ସାଧାରଣ ମନୁଷ୍ୟର ଜୀବନଯାପନ ପ୍ରଣାଳୀ ଓ ତା'ର ସାମାଜିକ ପରିବେଶରେ ଚରିତ୍ରର କ୍ରମବିକାଶ ସେ ଅତି ଦକ୍ଷତାର ସହିତ ଯଥାର୍ଥ ରୂପେ ବର୍ଣ୍ଣନା କରିଛନ୍ତି । ଏଥିରୁ ଜଣାପଡ଼େ ସେ ଓଡ଼ିଆ ଜାତୀୟ ପ୍ରାଣର ବାହ୍ୟିକ ପରିବେଶ ଓ ତା'ର ଅନ୍ତରର କରୁଣ ଧ୍ୱନିକୁ ସେ ମର୍ମେମର୍ମେ ଅନୁଭବ କରିଥିଲେ । ଗାଁ ମାଟିରେ ତାଙ୍କର ଜନ୍ମ-ଗାଁଟିର ଦୁଃଖରେ ହିଁ ତାଙ୍କର ଜୀବନଯାପନ, ପୁଣି ସେହି ଗାଁ ମାଟିରେ ହିଁ ତାଙ୍କର ମୃତ୍ୟୁ । ତେଣୁ ଚରିତ୍ର-ଚିତ୍ରଣରେ ତାଙ୍କର ପ୍ରଥମ ବିଶେଷତ୍ୱ ହେଉଛି ଜୀବନ୍ତ ଓ ବାସ୍ତବ ଜାତୀୟ ଚରିତ୍ର ସୃଷ୍ଟି । ସେଥିପାଇଁ ଫକୀରମୋହନ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ଜାତୀୟ ଔପନ୍ୟାସିକ । ଫକୀରମୋହନ ସାହିତ୍ୟରେ ଚରିତ୍ରକୁ ଆମେ ସାଧାରଣତଃ ଦୁଇଭାଗରେ ବିଭକ୍ତ କରିପାରୁ । ପ୍ରଥମରେ ମୁଖ୍ୟ ଚରିତ୍ର, ଦ୍ୱିତୀୟରେ ଗୌଣ ଚରିତ୍ର ।

''ଛମାଣ ଆଠଗୁଣ୍ଠ'' ଗାଁ ମାମଲତକାର ଧନଲୋଲୁପ ରାମଚନ୍ଦ୍ର ମଙ୍ଗରାଜ କିପରି ଭାବରେ ସେକ୍ ଦିଲ୍‌ଦାରମିଆଁଙ୍କ ଜମିଦାରୀ ଓ ନିରୀହ ସାରିଆ ଭଗିଆଙ୍କ ଛମାଣ ଆଠଗୁଣ୍ଠ ନେବାପାଇଁ ଚେଷ୍ଟା କରିଥିଲା, ତା'ର ଟିକିନିଖି ବର୍ଣ୍ଣନା ପଢ଼ିଲା ମାତ୍ରେ ଆଜିମଧ୍ୟ ସ୍ୱତଃ ମନେପଡ଼େ - କୌଣସି ଗ୍ରାମର ଏକ ଦୁର୍ବୃତ୍ତ ମାମଲତକାର କଥା । ମଙ୍ଗରାଜଙ୍କ ବିଭିନ୍ନ ଷଡ଼ଯନ୍ତ୍ର ଓ ସଂପତ୍ତି - ଲାଳସା, ଫକୀରମୋହନ ଉକ୍ତ ଚରିତ୍ର ମାଧ୍ୟମରେ ବାସ୍ତବ ଭାବରେ

ବର୍ଣ୍ଣନା କରିଛନ୍ତି । ସେହିପରି ମାମୁଁରେ ନାଜର ନଟବର ଦାସ ଅତି ସ୍ୱାର୍ଥପର ଓ ଲୋଭପରାୟଣ ହୋଇ ନିଜର ଭଉଣୀ ଚାନ୍ଦମଣିର ସମ୍ପତ୍ତିକୁ ନେବାପାଇଁ କିପରି ଚକ୍ରାନ୍ତ କରିଥିଲା ଔପନ୍ୟାସିକ ଅତି ଯଥାର୍ଥ ଭାବରେ ତାହାର ଚିତ୍ରଣ କରିଅଛନ୍ତି । ମଙ୍ଗରାଜ ଯେପରି ଗ୍ରାମ୍ୟ-ଦୁର୍ବୃତ୍ତ, ନାଜର ନଟବର ସେହିପରି ସହରୀ ଦୁର୍ବୃତ୍ତ । ଫକୀରମୋହନ ଏହିପରି ଏକ ଚରିତ୍ର ସୃଷ୍ଟି କରିଛନ୍ତି ଯେଉଁମାନଙ୍କ ମଧ୍ୟରେ ଚାରିତ୍ରିକ ଦ୍ୱନ୍ଦ୍ୱ ଦେଖାଯାଏ ଏବଂ ଯାହାପାଇଁ ସମାଜରେ ଅନେକ ଅଶାନ୍ତି ଓ ଦୁଃଖ ଉପୁଜିଥାଏ । ପୁଣି ନାରୀ ଚରିତ୍ରମାନଙ୍କ ମଧ୍ୟରେ ଛମାଣ ଆଠଗୁଣ୍ଠରେ ଚମ୍ପା, ଚିତ୍ରକଳା ପରି ବୁଦ୍ଧିମତୀ ପର ଅନିଷ୍ଟକାରିଣୀ ଚରିତ୍ର-ଚିତ୍ରଣ କରିବାରେ ଫକୀରମୋହନ ଖୁବ୍ ସୁଦକ୍ଷ । ଚିତ୍ରକଳା ଅପେକ୍ଷା ଚମ୍ପା ପରର ଅନିଷ୍ଟ ସାଧନ କରିବାରେ ଅତ୍ୟନ୍ତ ଭୟଙ୍କରୀ । କୂଟନୀତିକୁଶଳା 'ଚମ୍ପା' ଧର୍ମ ଓ ନୀତିରେ ଦ୍ୱାହି ଦେଇ ସରଳ ବାତ୍ସଲ୍ୟମୟୀ ସାରିଆ ହୃଦୟକୁ ବିଷାକ୍ତ କରିବା ସଙ୍ଗେସଙ୍ଗେ ତାକୁ ଅବନତିର ପଥକୁ ଠେଲି ଦେଇଛି ଏବଂ ଭଗିଆ ସମ୍ପତ୍ତିଶୂନ୍ୟ ଓ ବିପତ୍ନୀକ ହୋଇ ପାଗଳ ହୋଇ ଯାଇଛି । କେବଳ ଏତିକି ନୁହେଁ, ଚକ୍ରାନ୍ତଶୀଳା ଚମ୍ପା ନିଜ ହସ୍ତରେ ଅଗ୍ନିସଂଯୋଗ କରି ବାଘ ସିଂହର ସମସ୍ତ ଜିନିଷକୁ ଭସ୍ମୀଭୂତ କରିଛି । ସେହିପରି ଚିତ୍ରକଳାର ଚରିତ୍ରଗତ ଦ୍ୱନ୍ଦ୍ୱ ଓ ଦୋଷ ଦୁର୍ବଳତା ଦର୍ଶାଇ ଲେଖକ ସଂହାର-ମୂର୍ତ୍ତିଧାରିଣୀ ନାରୀର ଏକ ଯଥାର୍ଥ ରୂପ ଚିତ୍ରଣ କରିଛନ୍ତି । ଏହି ପ୍ରକାର ସାମାଜିକ ପରିସ୍ଥିତି ମଧ୍ୟରେ ମଙ୍ଗରାଜ ଓ ନଟବର ପରି ଦୁର୍ବୃତ୍ତ ଚରିତ୍ର ସୃଷ୍ଟିକରି ଚିତ୍ରକଳା ପରି ଅନିଷ୍ଟକାରିଣୀ କୂଟନୀତିପରାୟଣା ସ୍ତ୍ରୀର ଚରିତ୍ର-ଚିତ୍ରଣ କରି ଫକୀରମୋହନ ଦୁର୍ଦ୍ଦଶାଗ୍ରସ୍ତ ଓ ଅତ୍ୟାଚାରିତ ଦୀନହୀନ ଭାଗ୍ୟବାଦୀ ନିମ୍ନ ଶ୍ରେଣୀର ଭଗିଆ, ସାରିଆ ଭଳି ଚରିତ୍ର ପ୍ରତି ଏକ ଗଭୀର ମର୍ମସ୍ପର୍ଶୀ ସମବେଦନା ଦର୍ଶାଇଅଛନ୍ତି । ନିପୀଡ଼ିତ ଓ ନିଷ୍ପେସିତ ତଥା ଅବହେଳିତ ଶ୍ରେଣୀ ପ୍ରତି ତାଙ୍କର ଗଭୀର ମମତା ଓ ସହାନୁଭୂତି ଥିଲା । ତେଣୁ ଜଣାଯାଏ ସେ ଆଧୁନିକ ଓଡ଼ିଆ ପ୍ରଗତି ସାହିତ୍ୟରେ ଯଥାର୍ଥବାଦ ଓ ମାନବବାଦର ପ୍ରଥମ ଭିତ୍ତି ସ୍ଥାପନ ସେ କରିଥିଲେ । ଏକ ଯଥାର୍ଥବାଦୀ ଔପନ୍ୟାସିକ ହିସାବରେ ଫକୀରମୋହନ ମଙ୍ଗରାଜ ଓ ନଟବର ପରି ଦୁର୍ବୃତ୍ତ ଚରିତ୍ର ସୃଷ୍ଟି କରିଥିଲେ ମଧ୍ୟ ସେ ପ୍ରକାର ଧନୀ ଓ ଧନଲୋଲୁପ ଶ୍ରେଣୀର ଉଚ୍ଛେଦ ସାଧନ ତାଙ୍କର ଉଦ୍ଦେଶ୍ୟ ନ ଥିଲା କିମ୍ବା ସେ ପ୍ରକାର ଚରିତ୍ରକୁ ଏକ ପ୍ରକାର ଅତି ଘୃଣ୍ୟ ମାନବ ଚରିତ୍ର ହିସାବରେ ଚିତ୍ରଣ କରିନାହାଁନ୍ତି । ସେ କେବଳ ସମାଜର ପ୍ରଚଳିତ କୁସଂସ୍କାର ଓ ଅତ୍ୟାଚାର ବିରୁଦ୍ଧରେ ଲେଖନୀ ଚାଳନା କରି ସମାଜର ଏକ ବାସ୍ତବ ରୂପ ଦର୍ଶାଇବାକୁ ଚାହିଁଥିଲେ । ସମାଜର ସାମୂହିକ କଲ୍ୟାଣ ପାଇଁ, ଚରିତ୍ରଗତ ପରିବର୍ତ୍ତନ ପାଇଁ ସେ ଏକ ସୁସ୍ପଷ୍ଟ ଇଙ୍ଗିତ ଦେଇଛନ୍ତି । କିନ୍ତୁ ପ୍ରଗତିଶୀଳ ସାହିତ୍ୟିକମାନଙ୍କ ଉପନ୍ୟାସର ଚରିତ୍ରଗୁଡ଼ିକ ବିପ୍ଳବୀ ଓ ଅତି ବସ୍ତୁବାଦୀ । ଫକୀରମୋହନଙ୍କ ଚରିତ୍ରଗୁଡ଼ିକ ମଧ୍ୟରେ ସାରିଆ, ଭଗିଆପରି ଭାଗ୍ୟବାଦୀ ଓ ମଙ୍ଗରାଜପରି ଧନଲୋଲୁପ ଓ ବାଦଲ ସିଂ ପରି ପରୋପକାରୀ ଚରିତ୍ର ଅତି ବାସ୍ତବ ହୋଇ ଉଠିଛି । ସେ ଯାହାହେଉ, ସମାଜର ବାସ୍ତବ ଚରିତ୍ର-ଚିତ୍ରଣ କରି ଓ ସମାଜ,

ସମାଜର ଦୋଷ ଦୁର୍ବଳତା ଦର୍ଶାଇବା ମୂଳରେ ତାଙ୍କର ସମାଜ-କଲ୍ୟାଣର ଗଭୀର ପ୍ରେରଣା, ମାନବବାଦୀ ଦୃଷ୍ଟିଭଙ୍ଗୀ ଥିଲା । ତାଙ୍କ ସାହିତ୍ୟ ଆଦର୍ଶ ଥିଲା – ବାସ୍ତବ ଚରିତ୍ର-ଚିତ୍ରଣ ମାଧ୍ୟମରେ ଦୁର୍ବୃତ୍ତର ଦୁର୍ବଳତା ଓ ଦୁର୍ନୀତିକୁ ଲୋକଲୋଚନକୁ ଆଣିବା । ତାଙ୍କ ମତରେ ପାପୀକୁ ଘୃଣା କରିବା ଅପେକ୍ଷା ପାପକୁ ଘୃଣା କରିବା ଉଚିତ । ତେଣୁ ଦୁର୍ବୃତ୍ତ ଧନୀଶ୍ରେଣୀକୁ ଲୋପ କରିବାକୁ ସେ ଚାହୁଁ ନଥିଲେ । ସେ ଚାହୁଁଥିଲେ-ସେମାନଙ୍କ ହୃଦୟର ପରିବର୍ତ୍ତନ । ତେଣୁ ତାଙ୍କର ଚରିତ୍ର-ଚିତ୍ରଣ ମଧ୍ୟରେ ଆଦର୍ଶ ଥିଲା ମହତ୍ । ଫକୀରମୋହନଙ୍କ ଚରିତ୍ର-ଚିତ୍ରଣରେ ଆଦର୍ଶବାଦ ଓ ଯଥାର୍ଥବାଦର ଏକ ମିଶ୍ରିତ ଜୀବନଦର୍ଶନ ଦେଖିବାକୁ ମିଳେ । ସେ ଋଷୀୟ ଗାଳ୍ପିକ ଚେଖଭ ପରି ବିଶ୍ୱାସ କରୁଥିଲେ ଯେ –Men will become better when you show him what he is like. ଏହି ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ ଫକୀରମୋହନଙ୍କ ସାହିତ୍ୟିକ ଆଦର୍ଶ ଖୁବ୍ ଉନ୍ନତ । କାରଣ ଚରିତ୍ର-ଚିତ୍ରଣରେ ସମାଜ ସଂସ୍କାରର ପ୍ରେରଣା ହିଁ ତାଙ୍କର ଶ୍ରେଷ୍ଠ ବିଶେଷତ୍ୱ ।

ଫକୀରମୋହନ ତାଙ୍କର ମହତ୍ ଚରିତ୍ରଗୁଡ଼ିକ ମଧ୍ୟରେ ସାରିଆ, ଭାଗିଆ, ବାଦଲ ସିଂହ, ସେବାପରାୟଣା ସରସ୍ୱତୀ ଦେଈ ଓ ମଙ୍ଗରାଜ ସ୍ତ୍ରୀ ପରି ସହିଷ୍ଣୁ ଚରିତ୍ର ସୃଷ୍ଟି କରି ପାଠକ ମନରେ ସମବେଦନା ଓ ସହାନୁଭୂତି ଜାଗ୍ରତ କରିଛନ୍ତି । ତେଣୁ ଫକୀରମୋହନ ପାଠକ ହୃଦୟକୁ ଏକ ଉନ୍ନତ ଓ ମହତ ସ୍ତରକୁ ନେବାପାଇଁ ଗଭୀର ପ୍ରେରଣା ଦେଇଛନ୍ତି ।

ଏତଦ୍ ବ୍ୟତୀତ ଫକୀରମୋହନ ଗୌଣ ଚରିତ୍ର-ଚିତ୍ରଣ କରିବାରେ ଖୁବ୍ ଦକ୍ଷତା ଓ ମୌଳିକତା ଦର୍ଶାଇଛନ୍ତି । କେବଳ ଏତିକି ନୁହେଁ, ମୌଳିକ ଚରିତ୍ର ମାଧ୍ୟମରେ ହାସ୍ୟରସର ଅବତାରଣା କରି ପାଠକ ମନକୁ ଉଦ୍‌ଫୁଲ୍ଲ କରିଛନ୍ତି । ଚମ୍ପାର ରୂପ ବର୍ଣ୍ଣନା ଅତି ହାସ୍ୟ ଉଦ୍ଦୀପକ ହୋଇଛି । ହାସ୍ୟରସର ଅବତାରଣା କରିବା ପାଇଁ ଚମ୍ପାର ରୂପ ବର୍ଣ୍ଣନା କରିବାକୁ ଯାଇ ସେ ଲେଖିଛନ୍ତି –

"କଜ୍ଜଳ ପୂରିତ ଲୋଚନ ଭାଲେ
ଗୁଣ୍ଡି ମିଶା ଖିଲି ଗୁଞ୍ଜିତ ଗାଲେ
ତୈଳ ହରିଦ୍ରା ବୋଳିତ ଦେହେ
କୁକୁରୀବ ଶୀଘ୍ର ଧାବତି ଗେହେ ।"

ଏତିକି ପାଠକ ପଢ଼ିଲା ମାତ୍ରେ କ୍ଷଣିକ ପାଇଁ ସେ ହାସ୍ୟରୋଳରେ ଭୁଲିପକାଏ ତା'ର ବାହ୍ୟିକ ପରିବେଶ ତଥା ମାନସିକ ଦ୍ୱନ୍ଦ୍ୱ ଓ ଜଞ୍ଜାଳକୁ । ଏତଦ୍ ବ୍ୟତୀତ ଅପରର ଅନିଷ୍ଟକାରିଣୀ ନାକପୋଡ଼ିଆ ମା' "କଳିହୁଡ଼ି ଜଗା ଫତେ ମା", ମାରକଣ୍ଡିଆ ମା'ର ଚରିତ୍ର-ଚିତ୍ରଣ ଅତି ଜୀବନ୍ତ ଓ ବାସ୍ତବ ହୋଇ ଉଠିଛି । ତାଙ୍କର ଶ୍ରେଷ୍ଠ ନାରୀ ଚରିତ୍ର ମଧ୍ୟରେ ସରସ୍ୱତୀ ଦେଈ,ବିଶାଖା ଦେଈ ଓ ସାହୁ ସ୍ତ୍ରୀ ଶ୍ରୀମତୀ ଦେବୀ, ସରସ୍ୱତୀ ଦେଈଙ୍କ କର୍ମପ୍ରବଣତା ଓ ପରୋପକାରୀତା ବେଶ୍ ପ୍ରଣିଧାନଯୋଗ୍ୟ –ଫକୀରମୋହନ ଲେଖିଛନ୍ତି-"ସରସ୍ୱତୀ ଦେଈ ସକାଳୁ ରାତି ଅଧଯାଏ ଚରଖିପରି ଘୂରୁଥିବେ-ନାକ

ପୋଛିବାକୁ ଡର ନାହିଁ, ହେଲେ କ'ଣ ହେବ-ଦିକ୍‌ଦାର ଦେଖିବ ନାହିଁ-ସବୁବେଳେ ହାସ୍ୟମୁଖୀ-ସମସ୍ତଙ୍କ ପଛରେ ଶୋଇବେ, ଉଠିବାକୁ ସମସ୍ତଙ୍କ ଆଗ । ପୁଣି ବିଶାଖା ଦେଈଙ୍କ ସହିଷ୍ଣୁତା, ଭକ୍ତିପରାୟଣତା ପାଠକ ମନକୁ ମୁଗ୍ଧ କରେ ।

ଫକୀରମୋହନଙ୍କ ମାମୁଁ ଉପନ୍ୟାସରେ ହରିବୋଲ ବାରିକର ଚରିତ୍ର-ଚିତ୍ରଣ ଅତି ମର୍ମସ୍ପର୍ଶୀ ହୋଇଛି । 'ଗେହ୍ଲେଇ' ସତ୍ୟବାଦିନୀ,ନିର୍ଭୀକା ଆତ୍ମନିର୍ଭରଶୀଳା, ଯେ ଢଗ ଢମାଳି ବୋଲିବାରେ ଖୁବ୍ ପଟୁ । ସେହିପରି ପ୍ରାୟଶ୍ଚିତ୍ତରେ ମରୁଆ ଚରିତ୍ର ମଧରେ ଗଭୀର ମାନବିକ ଗୁଣ ପରିଲକ୍ଷିତ ହୁଏ । ମରୁଆ ଓ ଇନ୍ଦୁଙ୍କ ମଧ୍ୟରେ ପ୍ରେମ ଅତି ନିବିଡ଼ ଓ ଘନିଷ୍ଠ ଥିଲା ।

ସର୍ବୋପରି ଛମାଣ ଆଠଗୁଣ୍ଠର ଗୌଣ ଚରିତ୍ର ମଧ୍ୟରେ ''ଭୀମା ମା' ଭଣ୍ଡାରୁଣୀ'' ଜମିଦାର ସେଖ୍ ଦିଲ୍‌ଦାର ମିଆଁ, ଗୋବରା ଚୌକିଦାର ଜଗା ଫତେ ସିଂହ ଓ ମାମୁଁରେ ନାକପୋଡ଼ିଆ ମା'ର ଚରିତ୍ର ଅତି ବାସ୍ତବ ଓ ଜୀବନ୍ତ ତଥା ଓଡ଼ିଆ ଜାତୀୟ ଜୀବନର ପରିଚାୟକ ହୋଇଛି । ଏହି ସବୁ ଦୃଷ୍ଟିରୁ ଜଣାଯାଏ ଫକୀରମୋହନ ଚରିତ୍ରଗୁଡ଼ିକ ବାସ୍ତବରେ ଜୀବନ୍ତ ଓ ଅମର ।

ପୁଣି ତାଙ୍କ ଗଳ୍ପସ୍ୱପ୍ନ ପଢ଼ିଲେ ଜଣାଯାଏ, ରେବତୀ, ରାଣ୍ଡିପୁଅ ଅନନ୍ତା ଓ ଡାକ୍ ମୁନ୍‌ସୀ ଗଳ୍ପରେ ସେ ସମାଜର ବିଭିନ୍ନ ଶ୍ରେଣୀର ବିଭିନ୍ନ ପ୍ରକାରର ଚରିତ୍ର ସୃଷ୍ଟି କରିଛନ୍ତି । 'ପେଟେଣ୍ଟ ମେଡ଼ିସିନ୍'ରେ 'ସାଆନ୍ତାଣୀ'ର ଚରିତ୍ର ଅତି ବାସ୍ତବ ଓ ଅତି ମର୍ମସ୍ପର୍ଶୀ ହୋଇ ଉଠିଛି । ପୁଣି ଇଂରାଜୀ ଶିକ୍ଷିତ ଗୋପାଳର ଚରିତ୍ର ମଧ୍ୟରେ ଇଂରାଜୀ ଶିକ୍ଷା ଓ ସଭ୍ୟତା ପ୍ରତି ବିଦ୍ରୁପାତ୍ମକ ଇଙ୍ଗିତ ପରିଲକ୍ଷିତ ହୁଏ । ଧୂଳିଆବାବା ସୁନାବୋହୂ, ବିଦେଇ ବିଶ୍ୱାଳ, ଗାରୁଡ଼ିମନ୍ତ୍ର, ଅଧର୍ମବିତ୍ତ, ସଭ୍ୟ ଜମିଦାର ପ୍ରଭୃତି ଗଳ୍ପ ମଧ୍ୟରେ ଓଡ଼ିଆ ସମାଜର ଜୀବନ୍ତ-ଚିତ୍ର ଦେଖିବାକୁ ମିଳେ । ଧୂଳିଆବାବା ଗଳ୍ପରେ ଭଣ୍ଡ ବାବାଜୀ ଚରିତ୍ରରେ ସାମାଜିକ କୁସଂସ୍କାରର ସୂଚନା ପରିଲକ୍ଷିତ ହୁଏ । ଏତଦ୍ ବ୍ୟତୀତ ତାଙ୍କର''ହାଟ ବାହୁଡ଼ା'', ''ଅବସର ବାସରେ'', 'ଉତ୍କଳ ଭ୍ରମଣ' ଓ ବୌଦ୍ଧାବତାର କାବ୍ୟରେ ସମାଜ-ଚିତ୍ରଣ ତଥା ଚରିତ୍ର-ଚିତ୍ରଣ ବାସ୍ତବ, ତୀର୍ଯ୍ୟକ୍ ଓ ଜୀବନ୍ତ ହୋଇଉଠିଛି । ତେଣୁ ଫକୀରମୋହନଙ୍କ ଏହିସବୁ ବାସ୍ତବ, ଜାତୀୟ ଚରିତ୍ର ମାଧ୍ୟମରେ ପାଠକର ମାନସପଟରେ ଜୀବନ୍ତ ଗ୍ରାମ୍ୟ ଚିତ୍ରର ପ୍ରକୃତ ସ୍ୱରୂପ ଉଦ୍ଭାସିତ ହୋଇଛି ଏବଂ ସେମାନଙ୍କ ମନର ପ୍ରାକୃତିକ ଆନନ୍ଦ, ସମାଜ ଚେତନା ତଥା ଗଭୀର ସମବେଦନା ଓ ସହାନୁଭୂତି ସୃଷ୍ଟି ହୁଏ । ତେଣୁ ଯୁଗସ୍ରଷ୍ଟା ଫକୀରମୋହନ ଓଡ଼ିଆ ସାହିତ୍ୟର କେବଳ ଶ୍ରେଷ୍ଠ ଔପନ୍ୟାସିକ ନୁହନ୍ତି - ସେ ଜଣେ ଶ୍ରେଷ୍ଠ ସମାଜ-ସଂସ୍କାରକ ଓ ଚରିତ୍ର-ଚିତ୍ରକର ମଧ୍ୟ ।



# ସାହିତ୍ୟ ଓ ବାସ୍ତବତା

'ସାହିତ୍ୟ' ଓ 'ବାସ୍ତବତା' ଏହି ଦୁଇଟି ଶବ୍ଦ ଆଜି ସବୁ ଆଧୁନିକ ସାହିତ୍ୟ ଓ ଆଲୋଚନା ମଧ୍ୟରେ ବିଶେଷ ଭାବରେ ପ୍ରଚଳିତ । ପ୍ରକୃତ ବିଚାର କରିବାର କଥା– ଏହି ଦୁଇ ଶବ୍ଦର ପାରସ୍ପରିକ ସଂଯୋଗର ତାତ୍ପର୍ଯ୍ୟ କ'ଣ ଓ କାହିଁକି ଏ ଦୁଇଟି ମଧ୍ୟରେ ଏତେ ନିକଟ ସମ୍ପର୍କ ରହିଛି ?

ସାହିତ୍ୟ କହିଲା ମାତ୍ରେ – ସାଧାରଣତଃ ସମସ୍ତେ ପ୍ରବନ୍ଧ, କାବ୍ୟ, କବିତା, ଉପନ୍ୟାସ, ଗଳ୍ପ ଓ ନାଟକ ବୁଝିଥାନ୍ତି । କିନ୍ତୁ ପ୍ରକୃତରେ ସାହିତ୍ୟର ସଂଜ୍ଞା କ'ଣ ?

ସାହିତ୍ୟ ଶବ୍ଦରୁ ହିଁ ସାହିତ୍ୟର ଉତ୍ପତ୍ତି । ଏହାର ଅର୍ଥ–ସଂହତି ସହିତ– ସଂଯୋଗ ସ୍ଥାପନ । ଏହା ହିଁ ସାହିତ୍ୟର ପ୍ରକୃତ ସଂଜ୍ଞା ଓ ଅର୍ଥ ବୋଲି କେତେକ କହିଥାନ୍ତି । ପୁଣି ଆଉ କେତେକ କହନ୍ତି ଯାହାଦ୍ୱାରା ସମ୍ୟକ୍‌ହିତ ସାଧିତ ହୁଏ ତାହା ହିଁ ସାହିତ୍ୟ । କିନ୍ତୁ ଏହି ଦୁଇଟି ଅର୍ଥ ମଧ୍ୟରୁ କେବଳ କୌଣସି ଗୋଟିଏ ଅର୍ଥକୁ ସାହିତ୍ୟର ପୂର୍ଣ୍ଣ ସଂଜ୍ଞା ଭାବରେ ଗ୍ରହଣ କରାଯାଇନପାରେ ବରଂ ଏ ଦୁଇଟିର ଏକତ୍ରିତ ଭାବ ହିଁ ସାହିତ୍ୟର ପ୍ରକୃତ ଓ ଯଥାର୍ଥ ସଂଜ୍ଞା । ସାହିତ୍ୟ ହେଉଛି ତାହା, ଯାହା ସଂହତିର ଭାବ ପ୍ରକାଶ କରିବା ମାଧ୍ୟମରେ ସମ୍ୟକ୍ ହିତ ସାଧନ କରେ ।

ସାହିତ୍ୟ ଏକ ମହତ୍ କଳା ଏବଂ ଏହା ସତ୍ୟ, ଶିବ ଓ ସୁନ୍ଦରର ପୂର୍ଣ୍ଣାଙ୍ଗ ଚାରୁକଳା । ଏହି କଳା ପ୍ରବୃତ୍ତି ମଣିଷର ସ୍ୱାଭାବିକ ପ୍ରବୃତ୍ତି । ଏହି ପ୍ରବୃତ୍ତି ଆଦିମ ମଣିଷର ଜୀବନଯାପନ ପ୍ରଣାଳୀ ତଥା ସେମାନଙ୍କ ଗୋଷ୍ଠୀଗତ ଚରିତ୍ର ମଧ୍ୟରେ ପରିସ୍ଫୁଟ ଥିଲା ବୋଲି ଆମେ ଇତିହାସ ଓ ପ୍ରତ୍ନତାତ୍ତ୍ୱିକ ଆବିଷ୍କାରମାନଙ୍କରୁ ପ୍ରମାଣ ପାଇଥାଉ । ଏହି ପ୍ରବୃତ୍ତି ହେଉଛି ନିଜକୁ ବ୍ୟକ୍ତ କରିବାର ପ୍ରବୃତ୍ତି । ଏହା ହିଁ ସାହିତ୍ୟର ମୂଳ ନିଦାନ । ନିଜକୁ ବ୍ୟକ୍ତ କରିବାର ଅଦମ୍ୟ କାମନା, ଲିପି ପଠନ ଓ ପ୍ରଚଳନର ବହୁ ବର୍ଷ ପୂର୍ବରୁ ପ୍ରାଚୀନ ଲୌହ, ତାମ୍ର ଯୁଗରେ, ବଣଜଙ୍ଗଲରେ ବାସ କରୁଥିବା, ଆଦିମ ମଣିଷର ଇଙ୍ଗିତ, ଅଙ୍ଗଭଙ୍ଗୀ ଓ ରେଖା–ଚିତ୍ରରେ ସ୍ପଷ୍ଟ ହୋଇଉଠିଥିଲା । ତେଣୁ କେତେକ କହନ୍ତି – ଇଙ୍ଗିତ ଓ ରେଖା–ଚିତ୍ର ହିଁ ସାହିତ୍ୟର ଆଦିମସ୍ତର ।

ସାହିତ୍ୟ ହିଁ ଅନ୍ତରର ଭାବ, ଆଶା ଓ ଆକାଂକ୍ଷା ବ୍ୟକ୍ତ କରିବାର ପ୍ରକୃଷ୍ଟ ମାଧ୍ୟମ । ଆଦିମ ମଣିଷର ଜୀବନଯାପନ ପ୍ରଣାଳୀ ମଧ୍ୟରେ ଏ ଧରଣର ଲିଖିତ କାବ୍ୟିକ ଭାବ ଓ ତତ୍ତ୍ୱସମ୍ବଳିତ ସାହିତ୍ୟ ନଥିଲେ ମଧ୍ୟ ଇଙ୍ଗିତ ଓ ବିଭିନ୍ନ ପ୍ରକାର ଚିତ୍ରାଙ୍କନ ହିଁ ସେମାନଙ୍କ ଭାବ ବ୍ୟକ୍ତ କରିବାର ଶ୍ରେଷ୍ଠ ଉପାୟ ଥିଲା । ଏହାକୁ ସାହିତ୍ୟର ପ୍ରାଥମିକସ୍ତର ବୋଲି ଧରାଗଲେ, ଏହି ପ୍ରକାର ଭାବ ବ୍ୟକ୍ତ କରିବାର ପ୍ରଣାଳୀ ଏକାନ୍ତ ବାସ୍ତବଧର୍ମୀ–ତାହା ସୁସ୍ପଷ୍ଟ । ଏହି ରେଖା–ଚିତ୍ର କାଳକ୍ରମେ ପରିବର୍ତ୍ତୀତ ହୋଇ ବିଭିନ୍ନ ଭାଷାର ଲିପିଗଠନରେ ସହାୟତା କରିଥିଲା । ତେଣୁ ସ୍ପଷ୍ଟ ପ୍ରତୀୟମାନ ହୁଏ, ଯେ ସାହିତ୍ୟର ଆଦିମ ଅନୁନ୍ନତ ସରଳସ୍ତରରେ ବାସ୍ତବତା ହିଁ ଚିତ୍ରାଙ୍କନ ଲିପିର ମୂଳଧର୍ମ ଥିଲା । ଆଜି ମଧ୍ୟ ସାହିତ୍ୟିକମାନେ ବାସ୍ତବତା ଦିଗକୁ ଦ୍ରୁତଗତିରେ ଧାବମାନ ଏବଂ ସବୁ ସାହିତ୍ୟର ଶ୍ରେଷ୍ଠ ସାହିତ୍ୟିମାନେ ବାସ୍ତବତାର ପ୍ରତିଛବିକୁ ରୂପ ଦେବାପାଇଁ ସଚେଷ୍ଟ । ଏହି ଗତି ଏବେ କ୍ଷିପ୍ର ଓ ବେଗଶାଳୀ ହୋଇ ଉଠିଛି କାହିଁକି ?

ଜଣାଯାଏ ବହୁ ବର୍ଷ ଧରି ସାହିତ୍ୟ କେଉଁ ସୁଦୂର କପୋଳକଳ୍ପିତ ରାଜ୍ୟ ଆଡ଼କୁ ଗତି କରୁଥିଲା । ହଠାତ୍ ଏ ଗତିକୁ ପରିବର୍ତ୍ତନ କରାଯାଇ ଏହାକୁ ବାସ୍ତବ, ସମାଜମୁଖୀ ତଥା ଗଣମୁଖୀ କରାଯାଇଅଛି । କାରଣ ଆଦି ମଣିଷର ରେଖା–ଚିତ୍ରଦ୍ୱାରା ଭାବ ବ୍ୟକ୍ତ କରିବାର ବହୁ ବର୍ଷ ପରେ ଲିପି ସୃଷ୍ଟି ହୁଏ । ସାହିତ୍ୟର ଏହି ଶୈଶବରେ ତାହାର ଗତି ଥିଲା ଅନ୍ୟ ରାଜ୍ୟରେ । ସେତେବେଳେ ସାହିତ୍ୟକୁ କ୍ରମେକ୍ରମେ ଧର୍ମ ଓ ନୀତିଶିକ୍ଷାର ମାଧ୍ୟମ ବୋଲି ଧରି ନିଆଯାଇଥିଲା । ପରବର୍ତ୍ତୀ ମଧ୍ୟ ଯୁଗରେ ସାହିତ୍ୟରେ କପୋଳକଳ୍ପିତ ଗଳ୍ପ, ସ୍ୱପ୍ନ–ବିଳାସୀ ଭାବନା, ଅବାସ୍ତବ ଚରିତ୍ର ଓ ରୂପ ବର୍ଣ୍ଣନା ମାଧ୍ୟମରେ ନୀତିଶିକ୍ଷା ଦିଆଯାଇଥିଲା : ଫଳତଃ ଏଥିରେ ବାସ୍ତବଧର୍ମୀ ଗୁଣର ଖୁବ୍ ଅଭାବ ଥିଲା । ମଧ୍ୟଯୁଗୀୟ ଅନେକ ସାହିତ୍ୟରେ ବାସ୍ତବତା ପ୍ରାୟ ବିରଳ । ସେତେବେଳେ ସାହିତ୍ୟରେ ସାମାଜିକ ପରିବେଶକୁ ମୁଖ୍ୟ ଆସନ ଦିଆଯାଇ ନଥିଲା । ମଣିଷର ଆଶା – ଆକାଂକ୍ଷା, ଅଭାବ ଓ ସମସ୍ୟାକୁ ଚିତ୍ରଣ କରିବାର ପ୍ରକୃଷ୍ଟ ମାଧ୍ୟମ ରୂପେ ସାହିତ୍ୟ ଗୃହୀତ ହୋଇନଥିଲା । ଇଂରାଜୀ ସାହିତ୍ୟର ବାଇବେଲରେ ନାନା କପୋଳକଳ୍ପିତ ଚରିତ୍ର ଓ ଗଳ୍ପ ମାଧ୍ୟମରେ ସାହିତ୍ୟର ରୂପରେଖ ଦିଆଯାଇଛି । ଉଦ୍ଦେଶ୍ୟ ଥିଲା ଧର୍ମ ଓ ନୀତିଶିକ୍ଷାର ପ୍ରଚାର । ସେହିପରି ସଂସ୍କୃତ ସାହିତ୍ୟରେ ବେଦ ଓ ଉପନିଷଦର ବାଣୀ ପ୍ରଚାର ନିମିତ୍ତ ବହୁ ଉପାଖ୍ୟାନ ଓ ଗଳ୍ପ ଦେଖିବାକୁ ମିଳେ । ଧର୍ମର ମର୍ମ ବୁଝିବା ପାଇଁ ନାନା କାଳ୍ପନିକ ଚରିତ୍ର, କପୋଳକଳ୍ପିତ ଗଳ୍ପ ଓ ପୌରାଣିକ ଘଟଣାର ସୃଷ୍ଟି ହୋଇଥିଲା । ଏହି ପ୍ରକାର ସାହିତ୍ୟରେ ବାସ୍ତବତା ଅପେକ୍ଷାକୃତ କମ୍ ଥିଲା କହିଲେ ଚଳେ । ଏହି ପ୍ରକାର ସାହିତ୍ୟରେ ଆନନ୍ଦଲାଭ ବା ରସ–ସଞ୍ଚାର ଯେ ହେଉନଥିଲା ତାହା କୁହାଯାଇ ନ ପାରେ । କିନ୍ତୁ ଏହା ଅନେକ ପରିଣାମରେ ଅବାସ୍ତବ ଥିଲା । ଅନେକ କବି ସ୍ୱପ୍ନ–ବିଳାସୀ

(Romantic), ପଳାୟନପନ୍ଥୀ ତଥା ଆତ୍ମକୈନ୍ଦ୍ରିକ ଥିଲେ । ସେହିପରି ଅନେକ ପ୍ରାନ୍ତୀୟ ଭାରତୀୟ ସାହିତ୍ୟ କଥା ବିଚାର କଲେ ଜଣାଯାଏ ଯେ ଏହି ପ୍ରାଚୀନ ସାହିତ୍ୟ ଅନେକ ପରିମାଣରେ ଅବାସ୍ତବ ଥିଲା । ଭକ୍ତି, ପ୍ରେମ, ନୀତିଶିକ୍ଷା, ନାରୀର ଅତି-ରଞ୍ଜିତ ରୂପ ବର୍ଣ୍ଣନା ପ୍ରାଥମିକ ଓ ମଧ ଯୁଗରେ ଆମ ସାହିତ୍ୟର ଶ୍ରୀକୃଷ୍ଣଙ୍କ ପ୍ରତି ଗୋପୀମାନଙ୍କର ଅଚଳା ଭକ୍ତି, ଭାଗବତର ନୀତିଶିକ୍ଷା, ଏହା ହିଁ ଥିଲା ପ୍ରାୟ ଅଧିକାଂଶ ପ୍ରାଚୀନ ଲେଖାର ମୁଖ୍ୟବସ୍ତୁ । ସେହିପରି ବଙ୍ଗଳା ସାହି୍ୟ ଏବଂ ହିନ୍ଦୀ ସାହିତ୍ୟରେ ମଧ ବୈଷ୍ଣବ କବିମାନଙ୍କର ଲେଖାଗୁଡ଼ିକ ଭଗବଦ୍ ପ୍ରେମ ଅର୍ଥାତ୍ ଅତୀନ୍ଦ୍ରିୟ ଭାବନାରେ ପରିପୂର୍ଣ୍ଣ ଥିଲା । ସାମାଜିକ, ରାଜନୈତିକ, ସମସ୍ୟା-ବହୁଳ ଜଟିଳ ଆଧୁନିକ ଜୀବନର ନିଖୁଣ କରୁଣ ଚିତ୍ର ଓ ତା'ର ଆଶା ଓ ଆକାଙ୍କ୍ଷାର ପ୍ରତିଛବି ସେତେବେଳେ ପ୍ରାଚୀନ ବା ମଧ ଯୁଗର ସାହିତ୍ୟରେ ଖୁବ୍ କମ୍ ପରିମାଣରେ ପ୍ରତିଫଳିତ ହୋଇଥିଲା ।

ଆଜି ଜୀବନ ଜଟିଳ ଓ କର୍ମମୟ ହୋଇ ଉଠିଲାବେଳେ ମଧ୍ୟଯୁଗୀୟ ସ୍ୱପ୍ନବିଳାସୀ ଭାବନା, ଭକ୍ତିରସାଶ୍ରିତ ଭଗବତ ଆରାଧନା, ଗୋପୀଲୀଳା ଆଉ ଆଧୁନିକ କ୍ଷିପ୍ର ଗତିଶୀଳ କର୍ମମୟ ଜୀବନକୁ ଯଥାର୍ଥ ଓ ପ୍ରକୃତ ପନ୍ଥା ଦେଖାଇ ନପାରେ । ସାହିତ୍ୟିକ ହିଁ ଭାଷାସ୍ରଷ୍ଟା ଓ ସମାଜର ପଥଦ୍ରଷ୍ଟା । ଏହି ଦ୍ୱିବିଧ ବୈଶିଷ୍ଟ୍ୟ ଆଧୁନିକ ପ୍ରଗତିଶୀଳ ସାହିତ୍ୟରେ ସଫଳ ଭାବରେ ସମ୍ଭବ । କାରଣ ଆଧୁନିକ ପ୍ରଗତିଶୀଳ ସାହିତ୍ୟ, ସମାଜର ଆଶା ଆକାଙ୍କ୍ଷା, ଆନନ୍ଦ ଉତ୍ସାହ, ଦୁଃଖ-ସୁଖ, ନୈରାଶ୍ୟ, ଆଶ୍ୱାସନାର ପ୍ରକୃତ ଆଶ୍ରୟସ୍ଥଳ । ଏହି ସାହିତ୍ୟ ଅତୀନ୍ଦ୍ରିୟ ଭାବନା, କାଳ୍ପନିକ ଅବାସ୍ତବ ଚିନ୍ତାଧାରା, ପୌରାଣିକ, ଅତିମାନବ ଚରିତ୍ରକୁ ତ୍ୟାଗକରି, ଗଣଚେତନା, ଗଣଭାବନା ଆଡ଼କୁ ଗତି କରିଅଛି । ତେଣୁ ଏ ପ୍ରକାର ଆଧୁନିକ ସାହିତ୍ୟ, ବାସ୍ତବଧର୍ମୀ ଓ ଗଣମୁଖୀ ହୋଇଛି । ରାମାୟଣରେ ରାବଣର ଦଶମୁଣ୍ଡ ବର୍ଣ୍ଣନା, ସୁଗ୍ରୀବର ବନ୍ଧୁପ୍ରୀତି, ଉଚ୍ଛ୍ୱସିତ ଛନ୍ଦମୟ କାବ୍ୟ କବିତାକୁ ଛାଡ଼ି ଆଜିକାର ପ୍ରଗତି ସାହିତ୍ୟ, ସାମାଜିକ ଜୀବନ ସହିତ ସହାନୁଭୂତିଶୀଳ ହେବାପାଇଁ ବାସ୍ତବଧର୍ମୀ ଓ ଗଦ୍ୟମୟ ରୂପ ଧାରଣ କରୁଅଛି । ତେଣୁ ଆଧୁନିକ ସାହିତ୍ୟ ସଙ୍ଗେ ଆଧୁନିକ ଜୀବନର ସମ୍ବନ୍ଧ କ୍ରମେକ୍ରମେ ଘନିଷ୍ଠ ଓ ପ୍ରଭାବପୂର୍ଣ୍ଣ ହୋଇଉଠୁଛି । ସାହିତ୍ୟ ଆଜି ଜୀବନକୁ ପ୍ରଭାବିତ କରୁଛି ଓ ଜୀବନ ମଧ ସାହିତ୍ୟକୁ ବହୁ ପରିମାଣରେ ସ୍ପନ୍ଦିତ କରୁଛି । ସମାଜର ବିକାଶ, ପରିସ୍ଥିତି, ମାନବ ଜୀବନର ଆଶା ଆକାଙ୍କ୍ଷାର ରୂପ ଆଜିକାର ସାହିତ୍ୟର କଥାବସ୍ତୁ ହୋଇଅଛି । ଏ ସାହିତ୍ୟ ଅଗଣିତ ଜନତାର ସାହିତ୍ୟ, ତେଣୁ ଏହି ସାହିତ୍ୟକୁ ଗଣସାହିତ୍ୟ କୁହାଯାଇପାରେ । କାରଣ ଏହା ଜନସମାଜର ମର୍ମବାଣୀ ପ୍ରକାଶ କରିବା ସଙ୍ଗେସଙ୍ଗେ ରସ ପରିବେଷଣ କରୁଛି ଏବଂ ପୀଡ଼ିତ ଦରିଦ୍ର ଜନତାର ପ୍ରତି ସହାନୁଭୂତିଶୀଳ ହୋଇ ସେମାନଙ୍କ ଜୀବନର ଜଟିଳ ସମସ୍ୟାର ସମାଧାନ ପାଇଁ ଇଙ୍ଗିତ ଦେଇପାରୁଛି । ଏହା ହିଁ ଆଧୁନିକ ସାହିତ୍ୟର ବାସ୍ତବତା ।

ସମାଜ ଓ ଜୀବନର ସତ୍ୟଠାରୁ ଅଧିକ ସତ୍ୟ ବା କ'ଣ ହୋଇପାରେ ? ଜୀବନ ହିଁ ସତ୍ୟ, ବାସ୍ତବ, ସୁନ୍ଦର ଓ ମଙ୍ଗଳପ୍ରଦ । ଏହା ଆଧୁନିକ ସାହିତ୍ୟରେ ଅନୁଭୂତ ହୁଏ । ଆଧୁନିକ ସାହିତ୍ୟରେ ଶେଲୀଙ୍କ ବିବୃତ ବ୍ୟାଖ୍ୟା ଶୁଣିବାକୁ ମିଳେ । ଶେଲୀ ଦିନେ କହିଥିଲେ -"I love not the man less but nature more". କିନ୍ତୁ ଆଧୁନିକ ସାହିତ୍ୟିକର ଜୀବନ ଦର୍ଶନ ହେଉଛି I love not the nature less but men more ଏହା ହିଁ ଆଧୁନିକ ସାହିତ୍ୟର ବାସ୍ତବଧର୍ମୀ ଉକ୍ତି । ଏହି ଜୀବନଦର୍ଶନ ଦିନେ ଚଣ୍ଡୀଦାସଙ୍କ ଲେଖନୀରେ ରୂପ ପାଇଥିଲା-କବି ଗାଇଥିଲେ 'ସବାଇ ଉପରେ ମାନୁଷ୍ୟ ସତ୍ୟ, ତା'ର ଉପରେ କେଓନାଇଁ ।' ଏହି ସତ୍ୟତା ଆଧୁନିକ ଗଣ-ସାହିତ୍ୟରେ ପ୍ରତିଫଳିତ । ସମସ୍ୟାର ସମାଧାନ ନ ଦେଖାଇ ବୁଭୁକ୍ଷୁ ଜନତା ଆଗରେ ଯୀଶୁଙ୍କବାଣୀ, ବୁଦ୍ଧଙ୍କ ନିର୍ବାଣ ପନ୍ଥା, ଶଙ୍କରଙ୍କର ଅଦ୍ୱୈତ ଦର୍ଶନର ବ୍ୟାଖ୍ୟା ବା ଭଞ୍ଜକବିଙ୍କର ନାରୀର ଅତିରଞ୍ଜିତ ବର୍ଣ୍ଣନା ନୀତିଶିକ୍ଷା ବା କଳା ପାଇଁ କଳାର ପ୍ରଚାର ନିରର୍ଥକ । ତେଣୁ ଥରେ ପି.ଇ.ଏନ୍ ଅଧିବେଶନରେ ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ନେହେରୁ କହିଥିଲେ । "It is no good you and I talking ? about high literature to a starving person. we have to feed him, before we talk to him of religion and morality. The best morality is to feed him. A poor nation like ours has to think in these terms first." ସାହିତ୍ୟରେ କପୋଳକଳ୍ପିତ ଭାବ ଅଭିବ୍ୟକ୍ତିର ଯୁଗ ଆଜି ନାହିଁ । ଏହା ସମଗ୍ର କଳାପ୍ରିୟ ଶିଳ୍ପୀ ତଥା ପାଠକର ଅନୁଧ୍ୟାନର ବିଷୟ । ଆଜି ଲେଖକ ଆତ୍ମକୈନ୍ଦ୍ରିକତା, ଅତ୍ୟଧିକ କଳ୍ପନାବିଳାସ ଓ ସ୍ୱଆନନ୍ଦ ପ୍ରକାଶ କରିବାର ମାଧମରୂପେ ସାହିତ୍ୟକୁ ଗ୍ରହଣ କରିବାର ଆକାଙ୍କ୍ଷାକୁ ଭୁଲି ଯିବା ଉଚିତ । ସେ କବି ମାୟାକୋଭସ୍କି ପରି ଯେପରି ଗାଇଉଠେ-Wherever pain is there am I, on every drop of tear that is shed, I myself am crucified.

ଆଧୁନିକ ସାହିତ୍ୟ ସୃଷ୍ଟି ସମୟରେ ସ୍ରଷ୍ଟାର ଲକ୍ଷ୍ୟ ଯେପରି ହୁଏ ଅଗଣିତ ଜୀବନ ପ୍ରତି ସହାନୁଭୂତି ତଥା ଅଗଣିତ ଜୀବନ ସହିତ ଐକାନ୍ତିକ ସଂଯୋଗ ସ୍ଥାପନ । ବିଖ୍ୟାତ ଲେଖକ "Romain Rolland" ସାହିତ୍ୟିକ ଜୀବନର ଆଦର୍ଶ ସମ୍ବନ୍ଧରେ କହିଥିଲେ -There are indeed great artists who express only themselves, but the greatest of all is he whose heart beats for all." ପ୍ରକୃତରେ ଏହା ହିଁ ଆଧୁନିକ ସାହିତ୍ୟର ବାସ୍ତବତା ।



# ଆଧୁନିକ ସାହିତ୍ୟ ଓ ରାଜନୀତି

ସଭ୍ୟତାର ଅଗ୍ରଗତି ସଙ୍ଗେସଙ୍ଗେ ମାନବ ସମାଜରେ ଯେଉଁ ପରିବର୍ତ୍ତନ, ଚିନ୍ତା ଓ ଭାବନାର ଉଦ୍ଭବ ହୁଏ, ତାହା ସାହିତ୍ୟରେ ପରିଲକ୍ଷିତ ହୁଏ । ଏହି ଯୁଗ- ଚିନ୍ତାଧାରା ପ୍ରଭାବରେ ସାହିତ୍ୟ କ୍ରମେ କ୍ରମେ ସମୃଦ୍ଧିଶାଳୀ ହୋଇଉଠେ । ଏହି ବିଂଶ ଶତାବ୍ଦୀରେ ଆଧୁନିକ ମାନବ-ଜୀବନ ଯେତେବେଳେ ଯୁଦ୍ଧ-ବିଗ୍ରହ, ଶୋଷଣ ଓ ଅତ୍ୟାଚାରରେ ନିଷ୍ପେସିତ ଓ ଆତଙ୍କିତ, ସେତେବେଳେ ଆଧୁନିକ ସାହିତ୍ୟ କେବଳ ନିଛକ ସ୍ୱପ୍ନ ସୃଷ୍ଟି କରି ଜଟିଳ ମାନବ ଜୀବନକୁ ସ୍ୱପ୍ନାବିଷ୍ଟ ତଥା କଳ୍ପନା-ବିଳାସୀ କରେ ନାହିଁ : ବରଂ ସାମାଜିକ ଜୀବନ ସହିତ ଐକାନ୍ତିକ ସଂଯୋଗ ସ୍ଥାପନ କରିବା ସଙ୍ଗେସଙ୍ଗେ ପଦ-ଦଳିତ ଧ୍ୱଂସମୁଖୀ ମାନବିକତାକୁ ପ୍ରତିଷ୍ଠିତ କରିବାପାଇଁ ଚେଷ୍ଟା କରେ । ସମାଜର ବାସ୍ତବିକ ପ୍ରତିଛବି ଓ ମାନବର ଆଶା ଆକାଂକ୍ଷା, ସୁଖ-ଦୁଃଖ, ଅଶ୍ରୁ-ହାସ୍ୟକୁ ଅତି ନିଖୁଣ ଭାବରେ ଆଧୁନିକ ସାହିତ୍ୟ ରୂପ ଦିଏ ।

କିନ୍ତୁ ଯେତେବେଳେ ଜୀବନ ଜଟିଳ ଓ ରାଜନୈତିକ ମତବାଦର ଦ୍ୱନ୍ଦ୍ୱରେ ଗଭୀର ଭାବରେ ଆନ୍ଦୋଳିତ ହେଉ ନଥିଲା ଏବଂ ଅପେକ୍ଷାକୃତ ସରଳ ଓ ପ୍ରକୃତି-ନିର୍ଭରଶୀଳ ଥିଲା ସେତେବେଳେ ସେହି ପ୍ରାଚୀନ ତଥା ମଧ୍ୟଯୁଗର ସାହିତ୍ୟକୁ ବିଭିନ୍ନ ରୂପରେ ରୂପାୟିତ କରାଯାଇଛି । ଉଣା-ଅଧିକେ ସେତେବେଳେ ଅଧିକାଂଶ ସାହିତ୍ୟରେ କଳ୍ପନା-ବିଳାସ, ନିଛକ ଆନନ୍ଦ ଉପଭୋଗର ଚେଷ୍ଟା, ପ୍ରେମଭାବ, ଭଗବଦ୍ ବିଶ୍ୱାସ, ଧର୍ମଭାବର ପ୍ରଚାର ହିଁ ପରିଦୃଷ୍ଟ ହୁଏ । ଜଣାଯାଏ, ସେତେବେଳେ ଜୀବନ ଓ ସମାଜ ସହିତ ସାହିତ୍ୟର ସମ୍ପର୍କ କମ୍ ଥିଲା ଏବଂ ଆଧୁନିକ ଜଟିଳ ଜୀବନ ପରି ସେ ସମୟର ଜୀବନ ଓ ଜୀବନ-ଯାପନ ପ୍ରଣାଳୀ ଏହିପରି ସାହିତ୍ୟକୁ ପ୍ରଭାବିତ କରିପାରୁନଥିଲା । ତେଣୁ ସାହିତ୍ୟର ପ୍ରାଥମିକ ସ୍ତରରେ, ଆଦର୍ଶ ଥିଲା-ଧର୍ମ ଓ ନିଛକ ଆନନ୍ଦର ଆସ୍ୱାଦନ । ତା'ପରେ ମଧ 'କଳା ପାଇଁ କଳା'ର ସାଧନା (Art for Art sake) ଥିଲା ସାହିତ୍ୟର ଅନ୍ତର୍ନିହିତ ଆଦର୍ଶ । କିନ୍ତୁ ଏହି ଆଦର୍ଶ ଆଜି ଆଧୁନିକ ସାହିତ୍ୟରେ କ୍ୱଚିତ୍ ପରିଲକ୍ଷିତ ହୁଏ ।

ଆଜି ସାହିତ୍ୟ ଓ ରାଜନୀତି ପ୍ରତ୍ୟେକ ପ୍ରତ୍ୟେକକୁ ପ୍ରଭାବିତ କରୁଛି । ଜୀବନ, ସମାଜ, ରାଜନୀତି, ବିଜ୍ଞାନ ତଥା ଆଧୁନିକ ଜୀବନର ଅନ୍ୟାନ୍ୟ ଯାବତୀୟ ବିଭାଗ ସହିତ ସାହିତ୍ୟ ଘନିଷ୍ଠଭାବରେ ଜଡ଼ିତ । 'ଶିଳ୍ପ ବିପ୍ଳବ' ପରେପରେ ମଣିଷର ଜୀବନ ଓ ଜୀବନ-ଯାପନ ପ୍ରଣାଳୀ ସମସ୍ୟାପୂର୍ଣ୍ଣ ହୋଇଉଠିଲା । ସମାଜର ବିଭିନ୍ନ ଉତ୍ପାଦନ ପ୍ରଣାଳୀ କ୍ରମେ ଜଟିଳରୁ ଜଟିଳତର ହେବାକୁ ଲାଗିଲା । ଲୋକେ ଏ ଜଟିଳ ଜୀବନର ବିଭିନ୍ନ ବିଭାଗକୁ ଏକ ସୁନ୍ଦର ନୂତନ ରୂପ ଦେବାପାଇଁ ରାଜନୀତିର ଆଶ୍ରୟ ନେଲେ । ପୂର୍ବାପେକ୍ଷା ରାଜନୀତି ଆଲୋଚନା ଅଧିକ ଭାବରେ କରିବାକୁ ଲାଗିଲେ । ୧୯୧୪ରେ ପ୍ରଥମ ମହାସମର ଆରମ୍ଭ ହୋଇଗଲା । ଏହାର ପ୍ରଭାବରେ ସଂଘଟିତ ମାନବର ଦୁଃଖ-ଦାରିଦ୍ର୍ୟ ଓ ମାନସିକ ଦ୍ୱନ୍ଦ୍ୱର ଅବସାନ ନ ହେଉଣୁ, ଦ୍ୱିତୀୟ ମହାସମର ୧୯୩୯ରେ ଆସି ବିକଟାଳ ଦୈତ୍ୟରୂପେ ପୃଥିବୀର ଶାନ୍ତିକାମୀ ମାନବ ସମ୍ମୁଖରେ ଦେଖାଦେଲା । ଯୁଦ୍ଧପିପାସୁ ରାଜନୈତିକ ଦଳପ୍ରତି ଲୋକଙ୍କ ମନୋଭାବ ପରିବର୍ତ୍ତିତ ହେବାକୁ ଲାଗିଲା । ରାଜନୈତିକ ମତବାଦ ଓ ଘଟଣାବଳୀ, ସାମାଜିକ ଜୀବନର ଦୈନନ୍ଦିନ ଚିନ୍ତା ଓ ଆଲୋଚନାର କଥାବସ୍ତୁ ହୋଇ ଉଠିଲା । ଲୋକେ ଏହି ରାଜନୀତି ଓ ସମସାମୟିକ ଶାସନ-ପଦ୍ଧତି ମାଧ୍ୟମରେ ସୁଖଶାନ୍ତି ପାଇଁ ଆଗ୍ରହଶୀଳ ଓ ସଚେଷ୍ଟ ହେଲେ । ଦୁଇଟି ମହାସମର ପ୍ରଭାବରେ ମାନବ ଜୀବନ ସଙ୍କଟାପନ୍ନ ହେଲା । ମଣିଷର ଚିନ୍ତାଧାରା ସନ୍ଦେହ, ଆଶଙ୍କା ଓ ପ୍ରତିହିଂସାର କୁହେଳିକାରେ ଆଚ୍ଛନ୍ନ ହେଲା । ବିକ୍ଷୁବ୍ଧ ମଣିଷର ଆତ୍ମା ସୁଖଶାନ୍ତି ତଥା ସାମ୍ୟ-ମୈତ୍ରୀ ଲାଗି ବ୍ୟାକୁଳ ହେଲା । ଇତିହାସର ଏହି ସନ୍ଧିକ୍ଷଣରେ ସାହିତ୍ୟ ରାଜନୈତିକ ମତବାଦରେ ବିକ୍ଷୁବ୍ଧ ଓ ଯୁଦ୍ଧରେ କ୍ଷତ-ବିକ୍ଷତ ମାନବାତ୍ମାର ଆଶା-ଆକାଙ୍କ୍ଷାକୁ ରୂପ ଦେବାକୁ ଲାଗିଲା । ତେଣୁ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧଠାରୁ ଆଜି ବିଂଶ ଶତାବ୍ଦୀର ବିଭିନ୍ନ ଭାଷାର ଆଧୁନିକ ସାହିତ୍ୟ, ମାନବ-ସମାଜ ଓ ଜୀବନର ଦୋଷ ଦୁର୍ବଳତା ଦର୍ଶାଇବା ସଙ୍ଗେ ତା'ର ଭବିଷ୍ୟତ ଆଦର୍ଶକୁ ପ୍ରତିଷ୍ଠିତ କରିବା ପାଇଁ ଚେଷ୍ଟା କରି ଆସୁଛି । ତେଣୁ ଜଣେ ଇଂରେଜ ସମାଲୋଚକ କହିଥିଲେ – Really post-war poetry was born amongst the ruins of the world catastrophe. Poetry could hardly remain cheerful and inspiring in the atmosphere of general frustration and disillusionment.

ଏପରି ଭାବରେ ଆଧୁନିକ ସାହିତ୍ୟ ସଂକୀର୍ଣ୍ଣ ରାଜନୈତିକ ମତବାଦ ପ୍ରତି ଘୃଣାରସ୍ୱର ଉତ୍ତୋଳନ କଲା । ନାଜିବାଦ ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ଆଧୁନିକ ସାହିତ୍ୟକର ଲେଖନୀ ଅବିଶ୍ରାନ୍ତ ଗତିରେ ବିଦ୍ରୋହର ବାଣୀ ଘୋଷଣାକଲା । ୧୦୩୪-୩୫ ମସିହାରେ ବିଭିନ୍ନ ଦେଶର "ପ୍ରଗତିଶୀଳ ସାହିତ୍ୟକ-ସଂଘମାନ"(Congress of Progessive Writers.) ଗଢ଼ି ଉଠିଲା-ଯାହାର ଉଦ୍ଦେଶ୍ୟ ଥିଲା ଦୁର୍ଦ୍ଦଶାଗ୍ରସ୍ତ

ମାନବ ସମାଜର ବାସ୍ତବ ନିଖୁଣ ଚିତ୍ର ଦେବା ସଙ୍ଗେ ଏକ ସାମ୍ୟବାଦୀ ସମାଜର ନୂତନ ଆଶା ଓ ସ୍ୱପ୍ନର ସନ୍ଦେଶ ଦେବା । ତେଣୁ ଆଧୁନିକ ସାହିତ୍ୟ ସଂକୀର୍ଣ୍ଣ ବାଦ-ପ୍ରତିବାଦ ଉର୍ଦ୍ଧ୍ୱରେ ରହି ବିଶ୍ୱଶାନ୍ତି ପଥରେ ବିଘ୍ନ ସୃଷ୍ଟି କରୁଥିବା କେତେକ ରାଜନୈତିକ ମତବାଦ ବିରୁଦ୍ଧରେ ସଂଗ୍ରାମ କରିବାକୁ ଆଗଭର ହୋଇ ଉଠିଥିଲା । ପୁଞ୍ଜିବାଦ ଓ ଫାସିଷ୍ଟବାଦ ଓ ନାଜିବାଦ ପରିବର୍ତ୍ତେ ବିଶ୍ୱଭ୍ରାତୃତ୍ୱ (Universal Brotherhood) ଓ ସମାଜବାଦର ସନ୍ଦେଶ ସୂଚାଇଲା । କେବଳ ଏତିକି ନୁହେଁ, ମଣିଷ ଅନ୍ତରର ହତାଶା, ବିଫଳତା ଓ ଅସାରତା ମଧ୍ୟ ଆଧୁନିକ ସାହିତ୍ୟରେ ପ୍ରକାଶ ପାଇଲା । ଏହାର ଜ୍ୱଳନ୍ତ ନିଦର୍ଶନ ବିଖ୍ୟାତ ଇଂରେଜ କବି ଓ ସମାଲୋଚକ T. S. Eliotଙ୍କ "wasteland" । ତେଣୁ ଆଜି ସାହିତ୍ୟର ଗତିଧାରା ସାମାଜିକ ତଥା ବାସ୍ତବ ରାଜନୈତିକ ଜୀବନ ମଧ୍ୟରେ କଳକଳ ନାଦରେ କ୍ଷିପ୍ର ସ୍ରୋତସ୍ୱିନୀ ନଦୀପରି ମାନବ-ଭବିଷ୍ୟତର ଜୟଗାନ କରି ପ୍ରବାହିତ । ବୁଭୁକ୍ଷୁ ଓ ଧ୍ୱଂସୋନ୍ମୁଖୀ ମାନବାତ୍ମାର କାରୁଣ୍ୟ ପ୍ରକାଶ କରିବା ସଙ୍ଗେ ନିଷ୍ପେଷିତ ସମଗ୍ର ଜନତାଙ୍କ ବିଭିନ୍ନ ରସରେ ଅନୁପ୍ରାଣିତ କରୁଛି । ଆଜି କେବଳ ରାଜନୀତି ସାହିତ୍ୟକୁ ପ୍ରଭାବିତ କରିନାହିଁ, ସାହିତ୍ୟ ମଧ୍ୟ ରାଜନୀତିକୁ ପ୍ରଭାବିତ କରି ତା'ର ଅବରୁଦ୍ଧ ଗତିକୁ ବ୍ୟାପକ ଓ ବିବିଧ ସାମାଜିକ କଲ୍ୟାଣ ସାଧନ ପାଇଁ ଲୋକ-ମନରେ ନବ ଉଦ୍ଦୀପନା ଆଣି ଦେଉଛି । ତଥାପି କେତେକ ସମାଲୋଚକ ଏ ପ୍ରକାର ସମୃଦ୍ଧିଶାଳୀ ଆଧୁନିକ ସାହିତ୍ୟକୁ ସମାଜବାଦୀ ସାହିତ୍ୟ ବା ରାଜନୈତିକ ସାହିତ୍ୟ ବୋଲି କହୁଛନ୍ତି । ଯାହାହେଉ, ଏହା ସ୍ପଷ୍ଟ ଯେ ଆଜିର ସଂଘର୍ଷମୟ ଓ ସମସ୍ୟା ସଙ୍କୁଳ ପରିସ୍ଥିତି ତଥା ଆଧୁନିକ ବିଜ୍ଞାନର ପ୍ରଭାବରେ ସମସ୍ତେ ଅନୁଭବ କଲେଣି ଜୀବନ ହିଁ ସତ୍ୟ ଓ ସୁନ୍ଦର । ଏହି ଜୀବନର ଜୟଗାନରେ ସତ୍ୟ, ସୌନ୍ଦର୍ଯ୍ୟ, ମର୍ଯ୍ୟାଦା ଓ ମଙ୍ଗଳ ନିହିତ : ଏହି ଜୀବନକୁ ସୁନ୍ଦର ଓ ଶାନ୍ତିମୟ କରିବା ହିଁ ପରମ ଶ୍ରେୟ । ତେଣୁ ଆଧୁନିକ ସାହିତ୍ୟର ଜଣେ ବିପ୍ଳବୀ କବି ନଜରୁଲ୍ ଗାଇଥିଲେ -

**"ଗାଇ ସାମ୍ୟେର ଗାନ୍**
**ଜୀବନଇ ସତ୍ୟ**
**ଜୀବନେର ଚେଷ୍ଟୟ ନାହିଁ**
**କିଛୁ ସହୀୟାନ୍ ।"**

ପୁଣି Longfellow ମଧ୍ୟ କହିଥିଲେ -Life is real, life is earnest. ଆଧୁନିକ ପ୍ରଗତିଶୀଳ ସାହିତ୍ୟ ସମାଜର ଅନ୍ୟାୟ-ଅତ୍ୟାଚାର ବିରୁଦ୍ଧରେ ଏକ ସମବେତ ବିଦ୍ରୋହାତ୍ମକ ସ୍ୱର ଉଠାଇଛି । ଆଜିକାଲି ସାହିତ୍ୟିକ କେବଳ କବିତା, ପ୍ରବନ୍ଧ, ଉପନ୍ୟାସ ଲେଖି ନୀରବ ରହୁନାହିଁ । ବରଂ ଏକ ଶ୍ରେଷ୍ଠ ସମାଜସଂସ୍କାରକ ହିସାବରେ ସାମ୍ୟବାଦ ଓ ମାନବବାଦ ମୁକ୍ତ କଣ୍ଠରେ ଘୋଷଣା କରି ସମାଜକୁ ପରିବର୍ତ୍ତିତ କରିବାରେ ସାହାଯ୍ୟ

କରେ । ରାଜନୀତି ପରି ସାହିତ୍ୟ ମଧ୍ୟ ସମଗ୍ର ଜନତା ସହିତ ଓତପ୍ରୋତଃ ଭାବେ ଜଡ଼ିତ ରହେ । ସମାଜ କଲ୍ୟାଣ ପାଇଁ ରାଜନୈତିକ ଚିନ୍ତାଧାରାକୁ ଓ ଅବସ୍ଥାକୁ ପରୋକ୍ଷ ଭାବେରେ ପରିବର୍ତ୍ତିତ କରିବାରେ ପ୍ରଭୂତ ପ୍ରେରଣା ଓ ଚେତନା ସୃଷ୍ଟି କରେ । ଆଧୁନିକ ସାହିତ୍ୟିକ ଯେତେବେଳେ ନିଷ୍ପେଷିତ ମାନବର ଦୁର୍ଦ୍ଦଶାଗ୍ରସ୍ତ ଅବସ୍ଥା ଦେଖେ ଓ କରୁଣ କ୍ରନ୍ଦନ ଶୁଣେ, ସେତେବେଳେ ସେ କବି ମାୟାକୋଭସ୍କିଙ୍କ ଭାଷାରେ ମାନ କବିତାରେ ଉଦ୍‌ବୁଦ୍ଧ ହୋଇ ଗାଇ ଉଠେ –

"Whereever pain is there am i"
On a single tear that is shed
I myself am crucified -

"Clund in Trouser"

ଆଧୁନିକ ସାହିତ୍ୟ ଶ୍ରେଷ୍ଠ ଔପନ୍ୟାସିକ ରୋମାଁରୋଲାଙ୍କ ପରି ମୁକ୍ତ କଣ୍ଠରେ ସ୍ୱୀକାର କରେ –"There are indeed greatest artist who express only themselves, but greatest of all are those whose heart beat for all men". ଏ ପ୍ରକାର ଉଦ୍‌ବୋଧନ ମନରେ ଅପୂର୍ବ ସ୍ପନ୍ଦନ ସୃଷ୍ଟି କରି ବିପ୍ଳବର ପଥ ପ୍ରଦର୍ଶନ କରିଛି । ଆମେରିକା ଦାସପ୍ରଥା ବିରୋଧରେ Harriot Stow Uncle Tom's cabin ଉପନ୍ୟାସ ହିଁ ଦାସ ପ୍ରଥା ବିଲୋପର ନିମିତ୍ତ ଲେଖା ହୋଇଥିଲା । ସେହିପରି ବିଖ୍ୟାତ ଦାର୍ଶନିକ "Social Contract", Voltairଙ୍କ "Candide"ପୁସ୍ତକଗୁଡ଼ିକ ୧୭୯୮ ମସିହାରେ ହୋଇଥିବା ଫ୍ରାନ୍ସ ରାଷ୍ଟ୍ର ବିପ୍ଳବର ମୂଳ କାରଣ ଥିଲା । Rousseau ଙ୍କ ମାନବିକ ଚିନ୍ତାଧାରା ସାମ୍ୟମୈତ୍ରୀ ଭାବ ଫ୍ରାନ୍ସରେ ଅଷ୍ଟାଦଶ ଶତାବ୍ଦୀରେ ଯେଉଁ ରାଜନୈତିକ ବିପ୍ଳବ ସୃଷ୍ଟି କରିଥିଲା, ତାହା ଊନବିଂଶ ଶତାବ୍ଦୀରେ ଇଉରୋପ ତଥା ସମଗ୍ର ପୃଥିବୀରେ ଅଭୂତପୂର୍ବ ରାଜନୈତିକ ଓ ସାମାଜିକ ପରିବର୍ତ୍ତନ ସୃଷ୍ଟିକଲା । Man is born free but everywhere he is in chains – ରୁଷୋଙ୍କ ଏହି ମହତବାଣୀ ଏବେ ମଧ୍ୟ ଆଧୁନିକ ଗଣତନ୍ତ୍ରର ମୂଳମନ୍ତ୍ର ହୋଇ ରହିଛି । ବ୍ୟକ୍ତି-ସ୍ୱାଧୀନତା ଏବଂ ରାଜନୈତିକ କ୍ଷମତା ସାଧାରଣ ନାଗରିକର ଏକ ଅନ୍ତର୍ନିହିତ କ୍ଷମତା- ଏ କଥା ରୁଷୋ ହିଁ ପ୍ରଥମେ ଦର୍ଶାଇଥିଲେ ।

Vox populi voz dei- ରୁଷୋଙ୍କ ଏହି ପ୍ରବଚନ ଦୁଇଶହ ବର୍ଷଧରି ଏବେ ମଧ୍ୟ ରାଜନୈତିକ ଦର୍ଶନ ହୋଇରହିଛି । ବିଂଶ ଶତାବ୍ଦୀରେ Karl Maxଙ୍କ Das Capital ପୁସ୍ତକଟି ସାରା ପୃଥିବୀର ରାଜନୈତିକ ଚିନ୍ତାଧାରାରେ ଏକ ବିପ୍ଳବ ସୃଷ୍ଟି କରିଛି । ମାର୍କସଙ୍କ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ (Dielectical Materialism) ପୃଥିବୀରେ ଏକ ନୂତନ ସାମ୍ୟବାଦର ଭିତ୍ତି ସ୍ଥାପନ କରିଛି ଓ ପୁଞ୍ଜିବାଦ ଲୋପ କରୁଛି । ପ୍ରତ୍ୟେକ

ପଦାର୍ଥର ପ୍ରତ୍ୟେକ ଅବସ୍ଥା ଭିତରେ ଦୁଇଟି ବିପରୀତ ରୀତି ଅନ୍ତର୍ନିହିତ ଭାବେ ଅଛି- ଯାହାକୁ ମାକ୍ସର୍ Thesis - Antithesis ହିସାବରେ ପ୍ରତିପାଦନ କରିଛନ୍ତି । ମାକ୍ସର୍ୀୟ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଇତିହାସର ପ୍ରତ୍ୟେକ ସାମାଜିକ ଅବସ୍ଥାରେ ଦୁଇଟି ଶ୍ରେଣୀ ସଂଘର୍ଷ ରହିଛି ଏବଂ ଏହି ସଂଘର୍ଷ ସାମୟିକ ଉତ୍ପାଦନ ପ୍ରଣାଳୀ ଦ୍ୱାରା ପ୍ରଭାବିତ ଓ ପରିଚାଳିତ ହୋଇଛି । ମାକ୍ସର୍ଙ୍କ ମତରେ ଉତ୍ପାଦନ ପ୍ରଣାଳୀ ଓ ଅର୍ଥନୈତିକ ଅବସ୍ଥାର ପରିବର୍ତ୍ତନ ଦ୍ୱାରା ହିଁ ରାଜନୈତିକ ପରିବର୍ତ୍ତନ ସମ୍ଭବ । ଅର୍ଥନୈତିକ ଅବସ୍ଥାର ପରିବର୍ତ୍ତନ ପାଇଁ ଦୁଇ ବିରୋଧଧର୍ମୀ ଶ୍ରେଣୀର ପ୍ରତିଯୋଗ ଇତିହାସର ପ୍ରତି ସ୍ତରରେ ଦେଖାଯାଇଛି । ପୁଞ୍ଜିବାଦୀ ଓ ସର୍ବହରା ଶ୍ରମିକ ମଧ୍ୟରେ ଦ୍ୱନ୍ଦ୍ୱ ଅନିବାର୍ଯ୍ୟ । ତହିଁରେ ପୁଞ୍ଜିବାଦ ବିଲୋପ ମଧ୍ୟ ଅବଶ୍ୟମ୍ଭାବୀ । ଅବଶେଷରେ ସର୍ବହରାଙ୍କ ଆଧିପତ୍ୟ ବଜାୟ ରହିବ ।

ସେତେବେଳେ ହିଁ ଶ୍ରେଣୀହୀନ ସମାଜର ଉଦ୍ଭବ ହେବ ଓ ସାମ୍ୟବାଦ ପ୍ରତିଷ୍ଠା ସମ୍ଭବ ହେବ । ଏହି ପ୍ରକାର ଶ୍ରେଣୀବିହୀନ ସମାଜରେ ପ୍ରକୃତ ସାମ୍ୟ, ମୈତ୍ରୀ, ଶାନ୍ତି ଦେଖାଯିବ । Das Capital –ଏହି ଖଣ୍ଡିଏ ପୁସ୍ତକ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଓ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଆଧୁନିକ ଜୀବନଧାରରେ ଗୁରୁତର ପରିବର୍ତ୍ତନ ଆଣିଛି । ଗୋଟିଏ ଦିଗରେ ସାହିତ୍ୟିକମାନଙ୍କ ରଚନା ଯେପରି ପୃଥିବୀର ରାଜନୀତି ଓ ସମାଜନୀତିରେ ଗୁରୁତର ପରିବର୍ତ୍ତନ ଆଣିଛି, ଅନ୍ୟ ଦିଗରେ ସମ–ସାମୟିକ ରାଜନୀତି ସାହିତ୍ୟିକମାନଙ୍କ ଚିନ୍ତାଧାରା ରଚନାକୁ ପ୍ରଭାବିତ କରିଛି ।

ମାକ୍ସର୍ବାଦ ନୂତନ କଥା ବସ୍ତୁର ସୂଚନା ଦେଇଛି । ମାକ୍ସର୍ ଶୋଷିତ ଶ୍ରେଣୀର ସ୍ୱାଧୀନତା ଓ ମୁକ୍ତିର ଯେଉଁ ଧ୍ୱନି ଉଠାଇଲେ, ତାହା ସାରା ଋଷୀୟ ସାହିତ୍ୟକୁ ପ୍ରଭାବିତ କଲା । ଏହାର ଜ୍ୱଳନ୍ତ ନିଦର୍ଶନ ଗର୍କୀ, ପୁଷ୍କିନ, ମାୟାକୋଭିକ୍ସ୍ ପ୍ରମୁଖ ବିଖ୍ୟାତ ଋଷୀୟ ସାହିତ୍ୟକମାନଙ୍କର କାବ୍ୟ କବିତା, ଗଳ୍ପ, ଉପନ୍ୟାସ କେବଳ ଋଷୀୟ କାହିଁକି ଆନ୍ତର୍ଜାତିକ ସାହିତ୍ୟରେ ଏହି ମାନବବାଦୀ ଚିନ୍ତାଧାରାରେ ହିଁ ମୂର୍ତ୍ତିମନ୍ତ । Stphen Spender, T.S.Eliot ପ୍ରମୁଖ ବିଖ୍ୟାତ ଇଂରେଜ କବି ଓ George Spender,ଙ୍କ ପରି ବିଖ୍ୟାତ ନାଟ୍ୟକାରଙ୍କ ନାଟକଗୁଡ଼ିକର ଏହି ଚିନ୍ତାଧାରା ହିଁ ବିଶେଷ ଭାବରେ ପ୍ରତିବିମ୍ବିତ । ବିଶୃଙ୍ଖଳ ସମାଜ ଓ ଅଶାନ୍ତିପୂର୍ଣ୍ଣ ନୀତିହୀନ ରାଜନୀତିର ଅନ୍ତଃସାରଶୂନ୍ୟତା ଦେଖି T.S.Eliot ଅନେକ କ୍ଷେତ୍ରରେ ନିରାଶବାଦୀ ହୋଇ ପଡ଼ିଛନ୍ତି । ତାଙ୍କର ଏକ କବିତାରେ ସେ ଲେଖିଛନ୍ତି –

Where is life, we have lost in living
Where is wisdom, we have lost in knowledge,
where is knowledge, we have lost in information,

The cycles of havens, in 24th century
Are far from God, but nearer to dust

Song from Chorus

ଜର୍ଜ ବର୍ଣ୍ଣାଡଶ୍ ମଧ୍ୟ ସାମ୍ୟବାଦ ଦ୍ୱାରା ପ୍ରଭାବିତ ହୋଇ Fabian Socialist ବୋଲି ପରିଚିତ ଥିଲେ । ସୁତରାଂ ଅଧୁନା ରାଜନୀତି ପ୍ରତି କ୍ଷେତ୍ରରେ ସାହିତ୍ୟକୁ ପ୍ରଭାବିତ କରୁଛି । ଏକାଧାରରେ ବିଶିଷ୍ଟ ରାଜନୀତିଜ୍ଞ ଓ ସାହିତ୍ୟିକ ଜବାହାରଲାଲ୍ ନେହେରୁ ଥରେ P.E.N ଅଧିବେଶରେ ଭାରତୀୟ ସାହିତ୍ୟିକମାନଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ –

"It is no good, you and I, taking about high literature to a starving Person. We have to feed him before we talk to him.of rleigion of morality. The best morality is to feed him. A poor nation like ours has to think in these terms." ତେଣୁ ଆଜି ପ୍ରତ୍ୟେକ ସାହିତ୍ୟିକ ସାମାଜିକ – ରାଜନୈତିକ ଜୀବନ ସହିତ ଘନିଷ୍ଠ ଭାବରେ ସଂଶ୍ଳିଷ୍ଟ ଓ ସମ୍ବେଦନାଶୀଳ ବିଭିନ୍ନ ପରାଧୀନ ଜାତିର ଜାତୀୟ ଜାଗରଣ ଭୂମିକାରେ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏକ ସ୍ୱରରେ ସାହିତ୍ୟିକମାନେ ମାନବିକତାର ଆଦର୍ଶ ପ୍ରଚାର କରୁଛନ୍ତି । ଆମର ଏହି ଭାରତର ସ୍ୱାଧୀନତା ସଂଗ୍ରାମକୁ ଏହି ଭାବଧାରା ହିଁ ସାଫଲ୍ୟମଣ୍ଡିତ କରିଛି । ବିଶ୍ୱକବି ରବୀନ୍ଦ୍ରନାଥ, ବିଦ୍ରୋହୀ କବି ନଜରୁଲ, ଔପନ୍ୟାସିକ ବଙ୍କିମଚନ୍ଦ୍ର, ମୈଥିଳୀ ଶରଣ, ଗୋପବନ୍ଧୁ, କାଳିନ୍ଦୀ ଚରଣ ପ୍ରମୁଖଙ୍କ ସାହିତ୍ୟ ଏହି ମାନବତାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ଦୀନହୀନ–ଶୋଷିତ ଶ୍ରେଣୀର ଅବିଭକ୍ତ ସମାଜର ଅର୍ଥନୈତିକ ସାମ୍ୟ ପାଇଁ କବିମାନେ ମାନବବାଦ (Humanism)କୁ ସାହିତ୍ୟର ପ୍ରଧାନ ଆଦର୍ଶ ରୂପେ ଗ୍ରହଣ କରି ପ୍ରଗତିଶୀଳ ମାନବ–ଧର୍ମ ସାହିତ୍ୟ ସୃଷ୍ଟି କରିଛନ୍ତି । ବିଦ୍ରୋହୀ କବି ନଜ୍‌ରୁଲ ଯେତେବେଳେ ଦେଖିଲେ ଯେ ଏହି ବିଂଶ ଯୁଗର ସମାଜରେ ମଣିଷ ମଣିଷ ମଧ୍ୟରେ ଏକ ବିରାଟ ବ୍ୟବଧାନ କରିଛି, ସେ ନିର୍ଭୀକ ଭାବରେ ଗାଇଲେ –

**ଆମି ବିଦ୍ରୋହୀ ରଣକାନ୍ତ,**
**ଆମି ସେଇ ଦିନ ହବୋ ଶାନ୍ତ–**
**ଯେ' ଦିନ ଉତ୍ପୀଡ଼ିତ କ୍ରନ୍ଦନରୋଲ ଆକାଶେ–**
**ବାତାସେ ଧ୍ୱନିବେନା ଅତ୍ୟାଚାରୀର ଖଡ୍‌ଗ କୃପାଣ ।**
**ଭୀମ ରଣଭୂମେ ରଣିବେ ନା ।**

ପୁଣି ରବୀନ୍ଦ୍ରନାଥ ମଧ୍ୟ ଦରିଦ୍ର, ଚିର ନିର୍ଯ୍ୟାତିତ ମାଟିର ମଣିଷର ଜୟଗାନ କରିଛନ୍ତି –

**ମାଣିର ମାନୁଷ ମୁଖେ ଦିତେ ହବେ ଭାଷା -**

ପୁଣି ଏହି ମଜୁରିଆ ଲୋକମାନଙ୍କ ଜୀବନ-ଯାପନ ପ୍ରଣାଳୀ ଓ ଦୁଃଖକୁ ଅତି ହୃଦୟସ୍ପର୍ଶୀ ଭାବରେ ଲେଖିଛନ୍ତି -

**ଜୀବନ ମରଣେ**
**ଓରା ଚିରକାଲ ଟାନେ ଦାଂଡ଼**
**ଧରେ ଥାକେ ହାଲ**
**ଓରା ମାଠେ ମାଠେ ବୀଜ ବୋନେ**
**ପାକାଧାନ କାଟେ**
**ଓରା କାଜ କରେ ନଗର ପ୍ରାନ୍ତରେ-**

ଏହି କବିତାରେ ରବୀନ୍ଦ୍ରନାଥ ଶ୍ରମିକ ଜୀବନ-ସଂଗ୍ରାମର ଏକ ନିଖୁଣ ଚିତ୍ରଣ କରିଛନ୍ତି । ପ୍ରକାରାନ୍ତରେ ଜୀବନ ସଂଗ୍ରାମରେ କ୍ଳାନ୍ତ ଓ କର୍ମପ୍ରବଣ ଶ୍ରମିକର ଅର୍ଥନୈତିକ ଓ ସାମାଜିକ ଉନ୍ନତି ଆଶା ପୋଷଣ କରିଛନ୍ତି । ସେହିପରି ଋଷୀୟ ସାହିତ୍ୟିକ ଗର୍କୀ ଲେଖିଲେ -

Inspire the souls of the unfortunate -

କବି କାଳିନ୍ଦୀଚରଣ ତାଙ୍କର 'ମୋର ବାଣୀ' କବିତାରେ ଲେଖିଛନ୍ତି-

**ଯେ ବାଣୀ ନକହେ ମଣିଷ ଜାତିର କଥା,**
**ସେ ନୋହୁଁ ମୋ ଭାଷା ମୋର ନ ହେଉ-**

କବି ସଚି ରାଉତରାୟ ସମାଜର ଦଳିତ, ପତିତ, ଅବହେଳିତ ଓ ନିଷ୍ପେଷିତ ପ୍ରତି 'ରାଜଜେମା' କବିତାରେ ଲେଖିଛନ୍ତି -

**ମୁଁ ଏଇ ମାଟିର ଧାରା, ଆଉ ଆକାଶର କବି,**
**କାମ ନୁହେଁ ମୋ ଖାଲି ଆଙ୍କିବା କାଗଜର ଛବି :**
**ପେଶାଦାର ଗାୟକ ମୁଁ ନୁହେଁ,**
**ତୁମେ ମୋର ଛପା ବହି ଯେତେବେଳେ ଛୁଅଁ**
**ଛୁଅଁ ନୂଆ ମଣିଷର ଛାତି,**
**ତା'ର ପ୍ରତିଟି ଖବର**
**ରୂପ ପାଏ କବିତାରେ ମୋର :**
**ଖାଲି ମୋ ସମାଜ ବା ଦେଶର ନୁହ-**
**ଆଗାମୀ ସମାଜର ହାସ୍ୟ ଉଜ୍ଜ୍ୱଳ ମୁହଁ,**
**ତା'ର ନୂତନ ଖସଡ଼ା,**
**ମଣିଷର ପ୍ରେମ, ଅଶ୍ରୁ, ସୁଖ ଦୁଃଖ,**

**ଖାପଛଡ଼ା**
**ରୂପ ପାଏ ଇସ୍ତାହାରେ ମୋର**
**ଷୋଳଅଣା –**

ଏହାର ସାହିତ୍ୟିକ ଆଦର୍ଶ ସ୍ପଷ୍ଟ । ସାହିତ୍ୟ ନିଚ୍ଛକ କଳ୍ପନା-ବିଳାସ ବା ବ୍ୟବସାୟ ପାଇଁ ନୁହେଁ । ଏହା ସମାଜର ପ୍ରତ୍ୟେକ ବିଭାବ ଦ୍ୱାରା ପ୍ରଭାବିତ । ସମାଜକୁ ନୂତନ ଭାବରେ ଗଠନ କରିବା ପାଇଁ ଏହା ବଦ୍ଧପରିକର – ତଥା ସମସାମୟିକ ରାଜନୈତିକ ଓ ସାମାଜିକ ଚିନ୍ତାଧାରାର ଏକ ରୂପାନ୍ତର । ଆଧୁନିକ କବିତା ପରି ଆଧୁନିକ ଗଳ୍ପ ଉପନ୍ୟାସ ନାଟକ ମଧ୍ୟ ରାଜନୀତି ଓ ସମାଜନୀତି ଦ୍ୱାରା ପ୍ରଭାବିତ ।

ସାହିତ୍ୟ ଓ ରାଜନୀତି ମଧ୍ୟରେ ସମ୍ବନ୍ଧ ଅତି ଘନିଷ୍ଠ ଏହା ଆଜି ଅସ୍ୱୀକାର କରି ହେବନାହିଁ । ବିଂଶ ଶତାବ୍ଦୀ ମାନବ ଜୀବନରେ ଏହି ଦୁଇଟି ପ୍ରଭାବ ଅତି ନିବିଡ଼ ଭାବରେ ଅନୁଭୂତ ହୁଏ । ସାହିତ୍ୟ ଓ ରାଜନୀତି ମଧ୍ୟରେ ସମ୍ପର୍କ ଅବିଚ୍ଛେଦ୍ୟ । ତେବେ, ରାଜନୀତି ଅପେକ୍ଷା ସାହିତ୍ୟର ପରିସର ଅତି ବ୍ୟାପକ । ଏହାର ପ୍ରଭାବ ଚିରନ୍ତନ ଓ ମର୍ମସ୍ପର୍ଶୀ । ସାହିତ୍ୟରେ ମାନବର ସୁଖ-ଦୁଃଖ ଓ ଆଶା-ନିରାଶାର ଯେଉଁ ମର୍ମସ୍ପର୍ଶୀ କାହାଣୀ କବି ଓ ଗଳ୍ପକାରମାନେ ସୃଷ୍ଟି କରନ୍ତି, ତାହା ଯୁଗ-ଯୁଗ ଧରି ମାନବ ପ୍ରାଣକୁ ଅଭିଭୂତ କରେ । କିନ୍ତୁ ରାଜନୈତିକ ସ୍ଲୋଗାନ ଓ କୂଟନୀତି ମଣିଷକୁ କେବଳ କ୍ଷଣିକ ଉନ୍ମାଦନା ଓ ସନ୍ଦେଶ ଦିଏ । ତାହା ସାହିତ୍ୟ ପରି ଶାଶ୍ୱତ ଓ ରସମୟ ହୋଇ ନପାରେ । ପରନ୍ତୁ ଆଧୁନିକ ସାହିତ୍ୟ ଓ ରାଜନୀତି ମଧ୍ୟରେ ସାଦୃଶ୍ୟ ମଧ୍ୟ ଅନେକ ରହିଛି । ଉଭୟର ଆଦର୍ଶ ମାନବର ସୁଖ-ଶାନ୍ତି ଓ ସମୃଦ୍ଧି । ସାହିତ୍ୟ ଆଜି ରାଜନୀତି ଦ୍ୱାରା ପ୍ରଭାବିତ ହୋଇ ନିଜକୁ ସମୃଦ୍ଧିଶାଳୀ କରୁଛି । ତଥାପି, ଅନେକ ସମୟରେ ସାହିତ୍ୟକୁ ରାଜନୈତିକ ଉଦ୍ଦେଶ୍ୟ ସାଧନ ପାଇଁ ବ୍ୟବହାର କରାଯାଉଛି-ଯାହାଦ୍ୱାରା ସାହିତ୍ୟର ଆଦର୍ଶ ଓ ମହତ୍ତ୍ୱ କ୍ଷୁର୍ଣ୍ଣ ହେଉଛି । ହିଟଲର୍ ଓ ଗୋ'ବେଲ୍ Goebel ସମ୍ବାଦପତ୍ର ଓ ଦେଶର ସମସ୍ତ ସାହିତ୍ୟିକ ଅନୁଷ୍ଠାନକୁ ରାଜନୈତିକ ସ୍ଲୋଗାନର ମାଧ୍ୟମ ରୂପେ ବ୍ୟବହାର କରିଥିଲେ । ମୁସୋଲିନି ଓ ଷ୍ଟାଲିନ୍ ମଧ୍ୟ ସାହିତ୍ୟକୁ ରାଜନୀତିର ଏକ ପ୍ରଚାର ମାଧ୍ୟମ କରିଥିଲେ । ଏପରି କରିବାଦ୍ୱାରା ସାହିତ୍ୟ କେବଳ ବିଜ୍ଞାପନରେ ପର୍ଯ୍ୟବସିତ ହୁଏ । ସାହିତ୍ୟିକମାନଙ୍କର ବିରାଟ ବ୍ୟକ୍ତିତ୍ୱ ଓ ସ୍ୱାଧୀନତା ଖର୍ବ ହୁଏ । ଅନେକ ଆଧୁନିକ କବିତା ଓ ଗଳ୍ପ ନିରସ ରାଜନୈତିକ ଇସ୍ତାହାର ରୂପେ ପ୍ରକଟିତ ହୁଏ । ସାହିତ୍ୟ ରାଜନୈତିକ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହେବ ନିଶ୍ଚୟ କିନ୍ତୁ ସାହିତ୍ୟର ମହତ୍ତ୍ୱ, ଗୌରବ ଓ ସାହିତ୍ୟିକମାନଙ୍କର ବ୍ୟକ୍ତି-ସ୍ୱାଧୀନତା ଯେପରି ରାଜନୈତିକ ବ୍ୟକ୍ତି, ସଂଘ କିମ୍ବା ରାଷ୍ଟ୍ରଦ୍ୱାରା କଳୁଷିତ ନ ହେବ, ସେଥିପାଇଁ ଆମକୁ ଜାଗରୁକ ରହିବାକୁ ପଡ଼ିବ ।

■■■

# ସାହିତ୍ୟ ଓ ନୈତିକତା

Yet since the fine conduct of life springs only from fine ordering of responses far too subsite to be touched by any general ethical in axioms. This neglect of art by the movalist has been tantamount to a disqualification.

(I.A.Richards)

ସାହିତ୍ୟ ମନୁଷ୍ୟ ଭାବ ଅଭିବ୍ୟକ୍ତିର ଏକ ମାଧ୍ୟମ, ମନୁଷ୍ୟର ସୁଖ-ଦୁଃଖ-ବିରହ ଆଧ୍ୟାତ୍ମିକ ଚିନ୍ତା ସବୁକିଛି ରୂପ ନିଏ ସାହିତ୍ୟର ବିଭିନ୍ନ ବିଭାଗରେ । ମଣିଷ ଓ ମଣିଷ, ମଣିଷ ଓ ସମାଜ, ମଣିଷ ଓ ଈଶ୍ୱର ମଧ୍ୟରେ ସଂହତି ଓ ସଂଯୋଗ ସ୍ଥାପନ ସାହିତ୍ୟର ମୁଖ୍ୟ ଉଦ୍ଦେଶ୍ୟ ।

ସାହିତ୍ୟ ସଂଜ୍ଞା ଅଭିବ୍ୟକ୍ତି କରିବାକୁ ଯାଇ ସମାଲୋଚକମାନେ ରହିଛନ୍ତି, "ସହିତସ୍ୟ ଭାବ ସାହିତ ।" ବାସ୍ତବ ଜୀବନର ସୁଖ ଦୁଃଖର ଅନୁଭୂତିକୁ ପ୍ରକାଶ କରିବା ସାହିତ୍ୟର ଉଦ୍ଦେଶ୍ୟ । ସାହିତ୍ୟର ଏହି ବାସ୍ତବ ଧର୍ମୀ ସଂଜ୍ଞାକୁ ଇଂରାଜୀରେ race, moment, milieu ମତବାଦ ବୋଲି କୁହାଯାଏ । ବାସ୍ତବ ଜୀବନର ଅନୁଭୂତି ଛଡ଼ା ସାହିତ୍ୟ ମାଧ୍ୟମରେ ଅନ୍ୟ ଅତୀନ୍ଦ୍ରିୟ ଭାବନା ଯେ ପ୍ରକାଶ କରାଯାଇ ପାରେ, ଏହା ଉପରୋକ୍ତ ସମାଲୋଚକମାନେ ବିଶ୍ୱାସ କରନ୍ତି ନାହିଁ ।

ଅନ୍ୟପକ୍ଷରେ ଦାର୍ଶନିକ Bradley କଳାର ଆଦର୍ଶକୁ Art for Art's sake ବୋଲି କହିଛନ୍ତି । ତାଙ୍କ ମତରେ ନିଛକ କଳାର ସାଧନା ହିଁ କଳାର ସ୍ୱରୂପ । ସେ କହିଥିଲେ-

"First, nature is to be a point, now yet a copy of the real world, but to be would by itself independeent, complete, autonomous."

ଧର୍ମ, ସଂସ୍କୃତି, ଶିକ୍ଷା,ବ୍ୟକ୍ତିଗତ ଅଭିଜ୍ଞତା ସାହିତ୍ୟରେ ବିଭିନ୍ନ ଅଭିଜ୍ଞତା ଓ ଶିକ୍ଷାରୁ ହିଁ ଉଦ୍ଭୁତ ଏବଂ ଅଭିଜ୍ଞତା ସାମାଜିକ ପରିବେଶ ଓ ଚିନ୍ତାଧାରାରୁ ଗୃହୀତ ହୋଇଥାଏ । ସାହିତ୍ୟର ବସ୍ତୁ ନିରପେକ୍ଷ, ସ୍ୱତନ୍ତ୍ର, ସ୍ୱାଧୀନ ଅଭିବ୍ୟକ୍ତ, ବାସ୍ତବତା ସହିତ ସଂଶ୍ଳିଷ୍ଟ ଓ ସାମାଜିକ ପରିବେଶ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ତେଣୁ ସାହିତ୍ୟର ଉପରୋକ୍ତ "Art for Art's sake" ସଂଜ୍ଞା, ଗ୍ରହଣଯୋଗ୍ୟ ହୋଇ ନପାରେ । କାରଣ ଏହା ଦ୍ୱାରା ସାହିତ୍ୟକୁ ସମାଜ ଓ ଜୀବନ ସହିତ ବିଚ୍ଛିନ୍ନ କରିବା ସହିତ ସମାନ ହେବ ।

"Mattheew Arnold" ସାହିତ୍ୟର ସ୍ୱରୂପ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି, "Literature is criticism of life" ସମାଜର ବିଭିନ୍ନ ପରିସ୍ଥିତି ଉତ୍‌ଥାନ, ପତନ ଓ ମଣିଷ ବିଭିନ୍ନ ଭାବର ଅଭିବ୍ୟକ୍ତି ଦ୍ୱାରା ମଣିଷର ସଂସ୍କୃତିର ମାନ ଉନ୍ନତ ହୁଏ । ସମାଜରେ ମଣିଷ କେଉଁଠି ଭୁଲ୍ କରୁଛି ତା'ର ଚିନ୍ତାଧାରା ଓ କାର୍ଯ୍ୟ ଦ୍ୱାରା ସମାଜ ଉପରେ କି ପ୍ରକାର ପ୍ରଭାବ ପଡୁଛି ଏହା ସାହିତ୍ୟରେ ପ୍ରକାଶିତ ହେଲା ପରେ, ମଣିଷ ତା'ର ଭୁଲ୍ ଓ ଭ୍ରାନ୍ତିକୁ ସମ୍ୟକ୍ ରୂପେ ଜାଣିପାରେ ଏବଂ ଜୀବନ ଓ ସମାଜକୁ ସେହି ଅନୁସାରେ ସୁସଙ୍ଗଠିତ କରେ । ତେଣୁ ଜୀବନର ଆଦର୍ଶକୁ କେବଳ ସାହିତ୍ୟର ଆଦର୍ଶ ବୋଲି ଗ୍ରହଣ କଲେ ଏବଂ ସେହି ଅନୁସାରେ ସାହିତ୍ୟକୁ ରୂପାୟିତ କଲେ ତାହା କେବଳ ନିରସ ଓ ଦାର୍ଶନିକ ଉପଦେଶାବଳୀରେ ପରିଣତ ହେବ । ସେ ପ୍ରକାର ସାହିତ୍ୟ ହୃଦୟର ବିଭିନ୍ନ ଭାବ,ରସ ସୃଷ୍ଟି କରିପାରିବ ନାହିଁ । ସାହିତ୍ୟ କେବଳ Didactic heresayରେ ପରିଣତ ହେବ । ସାହିତ୍ୟ ଜୀବନର ବାସ୍ତବ ଅଭିଜ୍ଞତାକୁ ରୂପରେଖ ଦିଏ । ଯାହାଦ୍ୱାରା ମଣିଷର ସୁଖ, ଦୁଃଖ, କାମନା, ଯନ୍ତ୍ରଣା ଏପରି ଭାବରେ ପ୍ରକାଶିତ ହୁଏ ଯେ ତାହା ପାଂକ ମନରେ ସତ୍ୟାନୁରାଗ ଓ ବିମଳ ଆନନ୍ଦର ତରଙ୍ଗ ସୃଷ୍ଟି କରିପାରେ ।

ଏହିଠାରେ ଗୋଟିଏ ନୀତିଗତ ପ୍ରଶ୍ନ ଉଠେ କେଉଁ ଅଭିଜ୍ଞତାକୁ ସାହିତ୍ୟରେ ପ୍ରକାଶିତ ହେବା ଉଚିତ ଓ କେଉଁ ଅଭିଜ୍ଞତା ସମାଜ ପକ୍ଷରେ ମଙ୍ଗଳକର । ଜୀବନର ଅନେକ ଅନୁଭୂତି ରହିଛି, ଯାହା ଶ୍ରେୟ ବୋଲି ମନେହୁଏ ତାହା ସମାଜ ପକ୍ଷରେ ଶ୍ରେୟ ନୁହେଁ । କିନ୍ତୁ କବି ଓ ସାହିତ୍ୟିକଗଣ, କ'ଣ ଏହି ପ୍ରକାର ଅଭିଜ୍ଞତାକୁ ଉପେକ୍ଷା କରିବ ? ଏହାକୁ କ'ଣ ତା'ର କଳ୍ପନା ରାଜ୍ୟରୁ ପୋଛିଦେବ ?

କୌଣସି ଏକ ବିବାହିତା ନାରୀର ଉଚ୍ଛୃଙ୍ଖଳତା ଓ ପରକୀୟାପ୍ରୀତି ଯଦି ସାହିତ୍ୟିକ ଜୀବନର ଏକ ଅଭିଜ୍ଞତା ହୋଇ ଉଠେ ଏବଂ ସେ ଯଦି ତାହାକୁ ବାସ୍ତବଧର୍ମୀ ସାହିତ୍ୟ ହିସାବରେ ପ୍ରକାଶ କରିବାକୁ ଚାହେଁ ତାହାହେଲେ ସେ ତାହାକୁ କିପରି ପ୍ରକାଶ କରିବ, କାରଣ ସମାଜରେ ନାରୀର ସ୍ୱରୂପକୁ ଦେବୀ ତୁଲ୍ୟ ବର୍ଣ୍ଣନା କରାଯାଇଅଛି ଏବଂ ଏ ପ୍ରକାର ଅଭିଜ୍ଞତାର ନିଚ୍ଛକ ଅଭିବ୍ୟକ୍ତି ସମାଜ ପକ୍ଷରେ ଶ୍ରେୟ ହୋଇ ନପାରେ ।

ଅବଶ୍ୟ ଆଧୁନିକ ସାହିତ୍ୟରେ, ବିବାହିତା ନାରୀର ଉଚ୍ଛୃଙ୍ଖଳ ଯୌନ କାମନାକୁ ଏପରି ଭାବରେ ବର୍ଣ୍ଣନା କରି ଉପନ୍ୟାସମାନ ପ୍ରକାଶ ପାଉଛି, ଯାହା ଜୀବନ ଓ ସମାଜ ଉପରେ ପ୍ରଭାବ ପକାଉଛି ଏବଂ ପାଠକର ମନକୁ ସଂକୀର୍ଣ୍ଣ ଓ ଉଚ୍ଛୃଙ୍ଖଳ କରି ପକାଉଛି । ଏ ପ୍ରକାର ସାହିତ୍ୟକୁ ସାହିତ୍ୟ କହିବା ଅର୍ଥ ସାହିତ୍ୟର ପ୍ରକୃତ ଦିଗ୍‌ଦର୍ଶନକୁ ଅବଜ୍ଞା କରିବା ସହିତ ସମାନ ହେବ । ଏ ପ୍ରକାର ସାହିତ୍ୟକୁ Obscureବୋଲି କୁହାଯାଇଛି ଏବଂ ତାହା ଏକ ପ୍ରକାର pornograpich literature କୁହାଯିବ ।

ବାସ୍ତବବାଦୀ ସାହିତ୍ୟିକମାନେ କହିବେ – ପୁରାଣ ଯୁଗର ସମାଜ ବଦଳି ଗଲାଣି ନାରୀର । ଆକାଂକ୍ଷା ଆଜି ସମାଜର ପ୍ରତିକ୍ଷେତ୍ରରେ ଅବଦମିତ ଓ ଅତୃପ୍ତ ହୋଇଉଠୁଛି । ଫଳରେ ଜଟିଳ ସାମାଜିକ ପରିସ୍ଥିତିରେ ମନସ୍ତାତ୍ତ୍ୱିକ ଫ୍ରଏଡ୍‌ଙ୍କ ମତବାଦ ଅନୁସାରେ ମନର ଅତୃପ୍ତ କାମନା ଉଚ୍ଛୃଙ୍ଖଳତାର ରୂପରେଖ ନିଏ । ଏହା ଏକ ସ୍ୱାଭାବିକ ବାସ୍ତବ କଥା । ଏହା ସାହିତ୍ୟରେ ପ୍ରକାଶ କରିବା ଉଚିତ । କିନ୍ତୁ ନୈତିକବାଦୀମାନଙ୍କ ମତରେ ଏ ଧାରଣାର କଥାବସ୍ତୁ ସମ୍ୱଳିତ ଉପନ୍ୟାସ ସାମାଜିକ ଜୀବନ ପକ୍ଷରେ ଶ୍ରେୟ ନୁହେଁ । ଏହି କାରଣରୁ ବିଗତ ଊନବିଂଶ ଶତାବ୍ଦୀର ଅନେକ ପ୍ରବନ୍ଧ, ଉପନ୍ୟାସ ଓ କବିତା ସମାଲୋଚକଙ୍କ ମତରେ ଅନୈତିକ ବୋଲି ପରିଗଣିତ ହୋଇଛି । Havolock Ellis ଙ୍କ "Pschology of sex"ଙ୍କ ଏହି ଗ୍ରନ୍ଥ ପ୍ରଥମେ ଅନୈତିକ ବୋଲି ସମାଲୋଚକମାନେ ଘୋଷଣା କଲେ ଏବଂ ଏଥିପାଇଁ ହେଭଲକଙ୍କୁ ବିଚାରାଳୟର ସମ୍ମୁଖୀନ ହେବାକୁ ପଡ଼ିଥିଲା, କିନ୍ତୁ ପରେ ଏହା ଏକ ଗବେଷଣାମୂଳକ ଜ୍ଞାନପୂର୍ଣ୍ଣ ଗ୍ରନ୍ଥ ହିସାବରେ ପରିଗଣିତ ହୋଇଥିଲା । ଇଂରେଜୀ ସାହିତ୍ୟରେ ଶେଲୀଙ୍କ ନାଟକ 'ସେନ୍‌ସୀ'D.H.Laurenceଙ୍କ "Lady Chatterly Lover" ଏବଂ Leo Tolostoyଙ୍କ ଉପନ୍ୟାସ "Annakeranina ଓ Resurrection" ଅନୈତିକ ବୋଲି ସାହିତ୍ୟର ସମାଲୋଚକମାନେ ଘୋଷଣା କରି ସମାଲୋଚନା ସାହିତ୍ୟରେ ଏକ ବିବଦମାନ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି । ଆଜିସୁଦ୍ଧା ଏହି ନୈତିକ ପ୍ରଶ୍ନର ଆଲୋଚନା ଚାଲିଛି ।

ସାହିତ୍ୟରେ ନୈତିକ ମାନଦଣ୍ଡ ସମ୍ପର୍କରେ Arnold Benett ତାଙ୍କର ପୁସ୍ତକ "Censorship by Literature"ରେ ଲେଖିଛନ୍ତି "In 1909, it was decided that selection of books will be made by moral standard".

Ruskin ଏବଂ Morley ପ୍ରଭୃତି ସମାଲୋଚକମାନେ କହିଛନ୍ତି ଯେ ନୀତିବୋଧ ହିଁ ସାହିତ୍ୟିକ ମୂଲ୍ୟବୋଧର ମାନଦଣ୍ଡ ହେବା ଉଚିତ । କିନ୍ତୁ ଏକଥା ସତ୍ୟ ଯେ ଦେଶ କାଳପାତ୍ର ଅନୁସାରେ ବିଭିନ୍ନ ଦେଶରେ ନୈତିକତା ଓ ନୀତିବୋଧ ଭିନ୍ନ ଭିନ୍ନ ଏବଂ ପ୍ରତ୍ୟେକ ଦେଶର ଅର୍ଥ ସାମାଜିକ ପ୍ରଥା ଓ ସ୍ତ୍ରୀ ଜାତିପ୍ରତି ଦୃଷ୍ଟିକୋଣର ଭିତ୍ତି ଉପରେ

ନୈତିକତାର ତତ୍ତ୍ୱଗୁଡ଼ିକ ଗଢ଼ି ଉଠିଛି । ତେଣୁ କେବଳ ନୀତିର ମାନଦଣ୍ଡ ଉପରେ ସାହିତ୍ୟର କଥାବସ୍ତୁକୁ ବିଚାର କଲେ ପୃଥିବୀର ଅନେକ ଉଚ୍ଚକୋଟୀର ଚିରନ୍ତନ ସାହିତ୍ୟ ଅନୈତିକ ବୋଲି ପରିତ୍ୟକ୍ତ ହେବ, ଏପରିକି ବାଇବେଲ୍ ଓ ମହାଭାରତ ମଧ୍ୟ ।

ସାହିତ୍ୟ ଏକାଧାରାରେ ଆନନ୍ଦ ଦିଏ, ଅନ୍ୟ ପକ୍ଷରେ ମଣିଷ ହୃଦୟର ସୂକ୍ଷ୍ମତମ ଗୁଣାବଳୀକୁ ଜାଗ୍ରତ ଓ ସମୁନ୍ନତ କରେ । ଯୁଗର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସାହିତ୍ୟର କଥାବସ୍ତୁର ମଧ୍ୟ ପରିବର୍ତ୍ତନ ହେବା ସ୍ୱାଭାବିକ । ପୃଥିବୀରେ ଦୁଇଟି ମହାସମର ପରେ ଯୁଗର ସାମାଜିକ ଅବସ୍ଥା ଅତି ଜଟିଳ ଓ କରୁଣାତ୍ମକ ହୋଇ ଯାଇଛି । ମଣିଷ ଓ ମଣିଷ, ମଣିଷ ଓ ସମାଜ ମଧ୍ୟରେ ସମ୍ପର୍କ ଜଟିଳ ହୋଇ ଉଠିଛି ।

ସାହିତ୍ୟର ଏକ ବିଶିଷ୍ଟ ଗୁଣ ହେଉଛି ମମତା । ମଣିଷ ମଣିଷ ମଧ୍ୟରେ ଏହି ମମତ୍ୱବୋଧ ହିଁ ମଣିଷ ହୃଦୟକୁ ଆଲୋଡ଼ିତ ଓ ଅଭିଭୂତ କରେ । ଯଦି ସାହିତ୍ୟର କଥାବସ୍ତୁ ମଧ୍ୟରେ ଏହି ମମତାପୂର୍ଣ୍ଣ କାରୁଣ୍ୟ ଅନ୍ତର୍ନିହିତ ହୋଇଥାଏ ତେବେ ସେ ପ୍ରକାର ଉପନ୍ୟାସ, କବିତା କିମ୍ୱା ନାଟକ ସାମାଜିକ ନୀତିବୋଧ ଦୃଷ୍ଟିରୁ ଅନେକ ସମୟରେ ଅନୈତିକ ବୋଲି ବିବେଚିତ ହୋଇ ମଧ୍ୟ ତାହା ପ୍ରକୃତରେ ଉଚ୍ଚକୋଟୀର ସାହିତ୍ୟ ବୋଲି ସ୍ୱୀକୃତ ହୋଇଛି ।

ଏହି ଦୃଷ୍ଟିକୋଣରୁ ବିଚାର କଲେ ଆନାକାରେନିନ୍ ସହିତ, ଭ୍ରନସ୍କି, ସମ୍ପର୍କ, ଶ୍ରୀକାନ୍ତ ଉପନ୍ୟାସର ''ଶ୍ରୀକାନ୍ତ''ସହିତ ''ଅଭୟାର'' ସମ୍ପର୍କ ଅନୈତିକ ହୋଇ ନପାରେ । Flubertଙ୍କ ଉପନ୍ୟାସ Madam Bovaryରେ Madam Bovary ଏବଂ Thomas Hardyଙ୍କ ଉପନ୍ୟାସ "Tess of the D, urbervallies" ରେ Tess ଚରିତ୍ର ଆପାତ ଦୃଷ୍ଟିକୋଣରୁ ଅନୈତିକ ବୋଲି ବିବେଚିତ ହେଲେ ମଧ୍ୟ ପ୍ରକୃତରେ Madam Bovary ଓ Tessଙ୍କୁ ମନସ୍ତାତ୍ତ୍ୱିକ ଓ ସାମାଜିକ ଦୃଷ୍ଟିଭଙ୍ଗୀରୁ ବିଚାର କଲେ ଜଣାପଡ଼େ ଯେ ସେ ଦୁଇଟି ନାରୀ ଚରିତ୍ର ମଧ୍ୟରେ ପ୍ରକୃତରେ ଉଚ୍ଚକୋଟୀର ମୂଲ୍ୟବୋଧ ରହିଛି । ତେଣୁ ସାହିତ୍ୟର ନୈତିକ ମାନଦଣ୍ଡ ବିଚାର କଲାବେଳେ–

୧. ସାହିତ୍ୟର ଉଦ୍ଦେଶ୍ୟ,

୨. ଅନ୍ତିମ ପରିଣତି ଏବଂ

୩.ସାମୂହିକ ପ୍ରଭାବ

ଏହା ଉପରେ ବିଚାର କରିବା କଥା ।

ଏହି ତିନୋଟି ସୂତ୍ରରୁ ବିଚାର କଲେ ''ଆନାକାରେନିନ୍''‚''ଶ୍ରୀକାନ୍ତ''‚''ମାଡ଼ାମ୍ ବେଭେରୀ'' ପ୍ରଭୃତି ଉପନ୍ୟାସ ଉଚ୍ଚକୋଟୀର ସାହିତ୍ୟ ବୋଲି ପରିଗଣିତ ହେବ ।

କୌଣସି ଉପନ୍ୟାସ କବିତା କିମ୍ବା ଗଳ୍ପର ମାନଦଣ୍ଡ ଓ ମୂଲ୍ୟବୋଧ ଏହାର ପ୍ରକାଶଭଙ୍ଗୀ ଉପରେ ଅନେକ ପରିମାଣରେ ନିର୍ଭର କରେ । କେଉଁ ସ୍ଥଳରେ କି ପ୍ରକାର ବ୍ୟବହାର କଲେ ତାହା ପାଠକମାନଙ୍କ ଉପରେ ସୁପ୍ରଭାବ ପକାଇବ କି ନାହିଁ ତାହା ସାହିତ୍ୟିକର ପ୍ରଧାନ ଉଦ୍ଦେଶ୍ୟ ହେବା ଉଚିତ । ଅନେକ ଉପନ୍ୟାସରେ କଥାବସ୍ତୁ ଚିରାଚରିତ ସାମାଜିକ ପ୍ରଥାର ପରିପନ୍ଥୀ ହେଲେ ମଧ୍ୟ ଏଥିରେ ଭାଷା ଏତେ ସୁନ୍ଦର ଭାବରେ ପ୍ରୟୋଗ ହୋଇଥାଏ ଯେ ତାହା ପ୍ରକୃତରେ ଚରିତ୍ର ଗୁଡ଼ିକର ମହତ୍ତ୍ୱ ପ୍ରକାଶ କରିବାରେ ସମର୍ଥ ହୋଇଥାଏ ।

ଲିଓ ଟଲଷ୍ଟୟଙ୍କ ଉପନ୍ୟାସ ''ଆନାକାରେନିନ୍''ର ଭାଷା ଓ ଶୈଳୀ ଚରିତ୍ର ଚିତ୍ରଣରେ ଅଧିକ ପ୍ରାଞ୍ଜଳ ଓ ବଳିଷ୍ଠ ତଥା ଉଚ୍ଚକୋଟୀର ହୋଇଛି ।

ଆନାକାରେନିନ୍, ଷ୍ଟିଫେନ୍ ଆଲେକଜାଣ୍ଡାଭିଚ୍ ନାମକ ଜଣେ ଧର୍ମାନୁରାଗୀ ସମ୍ଭ୍ରାନ୍ତ ବ୍ୟକ୍ତିର ସ୍ତ୍ରୀ । ସେମାନଙ୍କ ମଧ୍ୟରେ ବୈବାହିକ ସମ୍ପର୍କ ତିକ୍ତ ହୋଇ ଉଠିଲା । ଆଲେକଜାଣ୍ଡାଭିଚ୍ ଓ ଆନାକାରେନିନ୍ ମଧ୍ୟରେ ସମ୍ପର୍କ କ୍ରମେକ୍ରମେ ଜଟିଳ ହୋଇ ଉଠିବାରୁ ସ୍ନେହପ୍ରବଣା ''ଆନା'' ପ୍ରକୃତ ଦାମ୍ପତ୍ୟ ସୁଖରୁ ବଞ୍ଚିତ ହୋଇପଡ଼ିଲା । ଫଳରେ ଆନାକାରେନିନ୍‌ର ମନେ ହେଲା ସେ ଯେପରି ଏକ ପ୍ରକାର ମାନସିକ ଦାମ୍ପତ୍ୟ ବନ୍ଧନରୁ ବଞ୍ଚିତା ହୋଇ ରହିଛି । ଏହି ପ୍ରକାର ମାନସିକ ପରିସ୍ଥିତିରେ ଆନାକାରେନିନ୍ ଓ ଭ୍ରନସ୍କି ମଧ୍ୟରେ ସମ୍ପର୍କ ନିବିଡ଼ ହୋଇଉଠିଲା । କିନ୍ତୁ ଆଲେକଜାଣ୍ଡାଭିଚ୍ ଆନାକାରେନିନ୍‌କୁ ଛାଡ଼ପତ୍ର ଦେବାକୁ ପ୍ରସ୍ତୁତ ନୁହନ୍ତି । ତେଣୁ ମାନବିକ ଦ୍ୱନ୍ଦ୍ୱ ମଧ୍ୟରେ ଆନାକାରେନିନ୍ ମନରେ ପୂର୍ବ ଦାମ୍ପତ୍ୟ ସ୍ମୃତି ଅପତ୍ୟ ସ୍ନେହ ଓ ଭବିଷ୍ୟତ ଜୀବନର ସୁନେଲୀ ଆଶା, ସବୁମିଶି ତା'ର ଜୀବନକୁ କାରୁଣ୍ୟମୟ କରି ତୋଳିଲା । ଜୀବନ ପାଇଁ ଆନାର ମମତା ଏତେ ଅଧିକ ଥିଲେ ସୁଦ୍ଧା ଭ୍ରନ୍‌ସ୍କି ସହିତ ବିବାହ କରି ନୂତନ ଜୀବନଯାପନ କରିବା ତା'ପକ୍ଷରେ ସମ୍ଭବ ହୋଇପାରିଲା ନାହିଁ । ସେ ଶେଷରେ ଆତ୍ମହତ୍ୟା କଲା । କିନ୍ତୁ ଆନାକାରେନିନ୍‌ର ମରଣକାଳୀନ ସେହି ଶେଷ ଉକ୍ତି ଅତ୍ୟଧିକ ମର୍ମସ୍ପର୍ଶୀ । Lord, forgive me, 'ମୃତ୍ୟୁ' ପୂର୍ବରୁ ଆନାକାରେନିନ୍ ନିଜକୁ ନିଜେ କହୁଛି :

"If I could be anything, but a mistress passionately, caring for nothing, but his caresses, but I cannot and I do not care to be anything else. And by that desire, I arouse aversion in him and he reserves fury in me and it can not be different."

ଆନାକାରେନିନ୍‌ର ଏହି ପ୍ରକାର ଉକ୍ତି ପଢ଼ିଲା ପରେ ବିବାହିତା ଆନାର ଭ୍ରନସ୍କି ସହ ସମ୍ପର୍କ ଅନୈତିକ ବୋଲି କହିହେବ ନାହିଁ । ବରଂ ଆନାକାରେନିନ୍‌ର ବେଦନାମୟ

କରୁଣ ଜୀବନ ପ୍ରତି ପାଠକର ମନରେ ଗଭୀର ସମବେଦନା ଭରିଉଠେ ଏବଂ ଆନାକାରେନିନ୍ ପ୍ରତି ପାଠକମନରେ ନିବିଡ଼ ମମତା ସୃଷ୍ଟି ହୁଏ । ସାହିତ୍ୟିକ ଉଦ୍ଦେଶ୍ୟ ଅନ୍ତିମ ପରିଣତି ଓ ସାମୂହିକ ପ୍ରଭାବ ଏହି ଦୃଷ୍ଟିକୋଣରୁ ଆନାକାରେନିନ୍ ଉପନ୍ୟାସ ଲିଓଟଲଷ୍ଟୟଙ୍କ ଏକ ଉଜ୍ଜ୍ୱଳ ସାଫଲ୍ୟ ଏଥିରେ ସନ୍ଦେହ ନାହିଁ ।

ସାହିତ୍ୟରେ ନୀତିବୋଧର ବିଚାର କଲାବେଳେ ଶୈଳୀ ବା ପ୍ରକାଶ ଭଙ୍ଗୀର ଅତି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହିଛି । ଆନନ୍ଦବର୍ଦ୍ଧନ, ଅଭିନବ ଗୁପ୍ତ, କ୍ଷେମେନ୍ଦ୍ର ଭାରତର କାବ୍ୟ ସମାଲୋଚକମାନେ ସାହିତ୍ୟରେ ପ୍ରକାଶଭଙ୍ଗୀ ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ । କେଉଁ ଭାଷା କେଉଁଠାରେ ପ୍ରୟୋଗ କଲେ ତାହାରେ ପ୍ରଭାବ କି ପ୍ରକାର ହେବ ଏବଂ ଭାଷା ପ୍ରୟୋଗ କ୍ଷେତ୍ରରେ ଔଚିତ୍ୟବୋଧ ପ୍ରତି ଅଧିକ ସଜାଗ ହେବା ପାଇଁ ସେମାନେ ଯୁକ୍ତି ଦର୍ଶାଇଅଛନ୍ତି । କ୍ଷେମେନ୍ଦ୍ର ତାଙ୍କର ଔଚତ୍ୟ ବିଚାର ଚର୍ଚ୍ଚାରେ କହିଛନ୍ତି –

"ଔଚତ୍ୟ ରସସିଦ୍ଧଂ ସ୍ଥିରଂ କାବ୍ୟସ୍ୟ ଜୀବିତମ୍"

(ଔଚିତ୍ୟ ବିଚାର ଚର୍ଚ୍ଚା– ପୃ ୧୧୫)

ବିଶିଷ୍ଟ ଇଂରେଜ ସମାଲୋଚକ Conard Lang ସାହିତ୍ୟରେ ନୈତିକତା ବିଚାର କଲାବେଳେ ଏହି ପ୍ରକାଶଭଙ୍ଗୀ ଉପରେ ଗୁରୁତ୍ୱ ଦେଇ କହିଛନ୍ତି, "If we regard, the representation of nude in painting and sculpture as not repulsive, so also in poety of erotic. We must sometimes allow a form in which in ordinary life, a justification is refused with regard to the degree and the kind of repressentation, the decision depends not upon moral but exclusively upon aesthetic consideration. The task of the poet is no more than this to describe transgression of the moral code in such a manner that they arise by an inner necessity out of whole course of activity, out of characters, out of the objective relationship." ବାସ୍ତବତାର ଦୃଷ୍ଟିକୋଣରୁ ବିଭିନ୍ନ ଦୁର୍ଗୁଣ ଚରିତ୍ରର ଦୁରାଚାରକୁ ଉପନ୍ୟାସରେ ବର୍ଣ୍ଣନା କରିବା ଉଚିତ । କିନ୍ତୁ ତାହା ଏପରି ଶୈଳୀରେ ପ୍ରକାଶିତ ହେବା ଉଚିତ ଯାହାଦ୍ୱାରା ପାଠକ ମନରେ ଏକ ସୁପ୍ରଭାବ ପଡ଼ିବ । "ଆନାକାରେନିନ୍" ଉପନ୍ୟାସ ଏହି ପ୍ରକାର ଉଚ୍ଚକୋଟୀର ଶୈଳୀରେ ଲିଖିତ ହୋଇଥିବାରୁ ତାହା ସାହିତ୍ୟ ଜଗତରେ ଏକ ଉଜ୍ଜ୍ୱଳ ସୃଷ୍ଟି ହିସାବରେ ଚିରଦିନ ବିବେଚିତ ହେବ ।

ଥରେ ଲିଓଟଲଷ୍ଟୟଙ୍କ ଉପନ୍ୟାସ Resurrection ଅନୈତିକ ବୋଲି ବିବେଚିତ ହେବାରୁ ଟଲଷ୍ଟୟ ତାହାର ଉତ୍ତର କହିଥିଲେ – "All I can say in my defence

is that when I read a book chiefly interests me is what author likes and what he hates and I hope that any one who reads my book with that view will find out what by the author's feelings. And I can say when I wrote the book, I abhored the lust with all my heart and one of the chief aims of the book was to express that abhorance". ଏହି ଦୃଷ୍ଟିରୁ ସାହିତ୍ୟର ନୈତିକତା ବିଷୟରେ ବିଚାର କଲାବେଳେ ବିଭିନ୍ନ ଭାଷା ପ୍ରୟୋଗର ଔଚିତ୍ୟ, ଭାବ ପ୍ରକାଶର ଭଙ୍ଗୀ, ଲେଖକର ଉଦ୍ଦେଶ୍ୟ, ଅନ୍ତିମ ପରିଣତି, ସର୍ବୋପରି ପାଠକ ଉପରେ ସାମୂହିକ ପ୍ରଭାବ ଏ ସମସ୍ତ ବିଷୟ ସାହିତ୍ୟରେ ନୈତିକତା ବିଷୟରେ ମାନଦଣ୍ଡ ବିଚାରର ଅନ୍ତର୍ଭୁକ୍ତ ହେବା ଉଚିତ ।

କିନ୍ତୁ ଆଜିକାଲି ସାହିତ୍ୟର ଶୈଳୀ ଭାଷା ପ୍ରୟୋଗ ପ୍ରତି ଆଦୌ ଗୁରୁତ୍ୱ ଆରୋପ କରାଯାଉ ନାହିଁ । ଅନେକ ତରୁଣ ଲେଖକ ବ୍ୟବସାୟିକ ବୁଦ୍ଧିରେ ପରିଚାଳିତ ହୋଇ ଯେଉଁ ଶସ୍ତା ଧରଣର ଉପନ୍ୟାସମାନ ଲେଖୁଛନ୍ତି ତାହାର କଥାବସ୍ତୁ ଓ ଶୈଳୀର ମାନଦଣ୍ଡ ଅତି ନିକୃଷ୍ଟ । ପାଠକ ଉପରେ ଏ ପ୍ରକାର ଉପନ୍ୟାସମାନ ଅନେକଙ୍କୁ ପ୍ରଭାବ ପକାଉଛି । ସାହିତ୍ୟରେ ସ୍ୱେଚ୍ଛାଚାରିତା ସର୍ବଦା ନିନ୍ଦନୀୟ । ସାହିତ୍ୟ ସତ୍ୟ, ଶିବ, ସୁନ୍ଦରର ସ୍ୱରୂପ । ତେଣୁ ପ୍ରତ୍ୟେକ ସାହିତ୍ୟ ଉତ୍ତମ ମାନଦଣ୍ଡ ନିର୍ଭର କରେ, ଏହି ସତ୍ୟ, ଶିବ, ସୁନ୍ଦର, ପ୍ରକାଶଭଙ୍ଗୀ କିମ୍ବା ଶୈଳୀ ଉପରେ । ଏହି ଶୈଳୀ ଓ ଲେଖାରୁ ପ୍ରକାଶଭଙ୍ଗୀ ଉପରେ ସର୍ବାଧିକ ଗୁରୁତ୍ୱ ଦେଇ କହିଥିଲେ –"There is no such thing as moral or immoral book. Books are either well-written or badly written."



# ସାହିତ୍ୟିକ ଆଲବେୟାର କେମ୍ୟୁ

ମନତୋଭି ନାମକ ଆଲଜେରିଆର ଏକ କ୍ଷୁଦ୍ର ସହରରେ ୧୯୧୩ ମସିହା ନଭେମ୍ବର ୭ ତାରିଖରେ ଏହି ବିଶ୍ୱବିଖ୍ୟାତ ନୋବେଲ ପୁରସ୍କାର ପ୍ରାପ୍ତ ସାହିତ୍ୟିକ ଜନ୍ମଗ୍ରହଣ କରିଥିଲେ । ତାଙ୍କର ମା' ହେଉଛନ୍ତି ସେନିସ୍ ଏବଂ ବାପା ହେଉଛନ୍ତି କୃଷିକର୍ମୀ । ମେରିନାର ଯୁଦ୍ଧରେ କେମ୍ୟୁଙ୍କ ପିତାଙ୍କ ମୃତ୍ୟୁ ପରେ କେମ୍ୟୁଙ୍କ ଜୀବନ-ସାଧନା ଦୁଃଖ ଓ ଝଡ଼ ଝଞ୍ଜା ମଧ୍ୟରେ ଗତି କରିଥିଲା । ତଥାପି ସେ ଆଶାବାଦୀ ହୋଇ ଜୀବନକୁ ସୁନ୍ଦର ଓ ମହତ କରିବାକୁ ଅକ୍ଳାନ୍ତ ସାଧନା କରିଛନ୍ତି । ତାଙ୍କର ପ୍ରଥମ ବହିର ମୁଖବନ୍ଧରେ ସେ ନିଜେ ତାଙ୍କ ଜୀବନ ସମ୍ବନ୍ଧରେ ଲେଖିଛନ୍ତି -"Poverty was not a calamity for me. It was always balanced by richness of light. Circumstances helped me to correct a natural indifference. I was placed half away between misery and the sun. Misery kept me believing that all was well under the sun and the sun taught me that history was not everything."

୧୯୫୨ ମସିହାରେ ସେନିସ୍ ଅନ୍ତର୍ଯୁଦ୍ଧରେ ସେ ଜଡ଼ିତ ରହି ସ୍ପେନ୍‌ର ସୁଖ ଶାନ୍ତି ପାଇଁ ସର୍ବଦା ଚେଷ୍ଟିତ ଥିଲେ । ସେ ଯେତେବେଳେ ଜାତି ସଂଘ (UNESCO) ଅଫିସରେ ଚାକିରି କରୁଥିଲେ ସେତେବେଳେ ସ୍ପେନ୍‌ର ଫ୍ରେଙ୍କୋ ସରକାରଙ୍କୁ ଜାତିସଂଘ ବହୁତ ଶକ୍ତିମାନ ବୋଲି ସ୍ୱୀକାର କଲେ । ସେ ଏହାର ପ୍ରତିବାଦ କରି ଜାତିସଂଘ(UNESCO)ର ସଂସ୍ଥାରୁ ନିଜର ଚାକିରିକୁ ସ୍ୱଇଚ୍ଛାରେ ତ୍ୟାଗ କଲେ ।

ଆଲବେୟାର କେମ୍ୟୁଙ୍କ ଶିକ୍ଷା ମଧ୍ୟ ଏକ ସାଧନାମୟ ଇତିହାସ । ଜଣେ ଶିକ୍ଷକ ତାଙ୍କୁ ଛାତ୍ରବୃତ୍ତି ପାଇବାରେ ସାହାଯ୍ୟ କରିଥିଲେ । ସେ ବିଭିନ୍ନ ପ୍ରକାର କାମ କରି ବିଶ୍ୱବିଦ୍ୟାଳୟର ଶିକ୍ଷା ଖର୍ଚ୍ଚ ବହନ କରିବାକୁ ସମର୍ଥ ହୋଇପାରିଥିଲେ । ଏକ Metrological Institutionରେ ଛୋଟଛୋଟ କାମ କରି ନିଜର ଭରଣପୋଷଣ ଓ ପଢ଼ା ଖର୍ଚ୍ଚ ଚଳାଉଥିଲେ । କେତେବେଳେ Automobile parts ଗୁଡ଼ିକ ବିକ୍ରୟ

କରି ନିଜର ଅଭାବ ପୂରଣ କରୁଥିଲେ । ଏହିପୂରି ଅର୍ଥାଭାବ ମଧ୍ୟରେ ସେ ନିଜର ଶିକ୍ଷା ଜୀବନ କଟାଉଥିଲେ । ଏହି ସମୟରେ ସେ ଯକ୍ଷ୍ମା ରୋଗରେ ପୀଡ଼ିତ ହୋଇ ମଧ୍ୟ ସେ ହତୋତ୍ସାହ ହୋଇ ନଥିଲେ । ବିଶ୍ୱବିଦ୍ୟାଳୟର ଶିକ୍ଷା ସମୟରେ Hellenism and Christianity ସମ୍ବନ୍ଧରେ ଗବେଷଣାମୂଳକ ପୁସ୍ତକ ଲେଖି ସର୍ବୋଚ୍ଚ ଉପାଧି ଲାଭ କରି ଖ୍ୟାତି ଅର୍ଜନ କରିଥିଲେ ।

ଶିକ୍ଷା ସମାପ୍ତି ପରେ ତାଙ୍କର ପରବର୍ତ୍ତୀ ଜୀବନର ଏକ ପରିବର୍ତ୍ତନ ଆସିଲା । ଯେଉଁ ଦିନ ସେ ନାଟ୍ୟ ପରିଷଦରେ ଅଭିନେତା ହିସାବରେ ଚାକିରି କରିବା ପାଇଁ ଦରଖାସ୍ତ କଲେ, ସେହିଦିନୁ ରଙ୍ଗମଞ୍ଚର ଅଭିନେତା ହିସାବରେ କେମ୍ୟୁଙ୍କ ଅଭିନୟର ଦକ୍ଷତା କ୍ରମେ ବୃଦ୍ଧି ପାଇଲା । ନିଜର ଅଭିଜ୍ଞତାରେ ସେ ଉଦ୍‌ବୁଦ୍ଧ ହୋଇ ଆଲବେୟାର କେମ୍ୟୁ ନିଜର ଏକ ସ୍ୱତନ୍ତ୍ର ଅଭିନୟ ଦଳ ଗଠନ କଲେ ଏବଂ ତାହାର ନାମ ଦେଲେ - L' Equipa

ଏହି ନାଟ୍ୟ ସଂଗଠନରେ ସେ ପ୍ରଥମେ Dostoevsky Brother's Kuramjor ଏବଂ ଦ୍ୱିତୀୟରେ ବିଖ୍ୟାତ ଗ୍ରୀକ୍ ନାଟକ Aesehelusଙ୍କ Promitheus ଅଭିନୀତ କରାଇଥିଲେ । ଏହି ଅଭିନୟ ପରେ ତାଙ୍କ ନାଟ୍ୟ ସଂଗଠନ L' Equipaର ଖ୍ୟାତି ବଢ଼ି ଯାଇଥିଲା । ଇତି ମଧ୍ୟରେ ସେ ନିଜେ ଚାରିଖଣ୍ଡ ନାଟକ ଲେଖିଥିଲେ । ତା'ପରେ ସେ Caldern ଙ୍କ Lopedervergh ଏବଂ William Faulknarଙ୍କ ନାଟକଗୁଡ଼ିକ ଅନୁବାଦ କଲେ । ତାଙ୍କର ଏକ ନାଟକ Requiem ରଙ୍ଗମଞ୍ଚରେ ତିନିଶହ ଥର ଅଭିନୀତ ହୋଇଥିଲା । କେମ୍ୟୁଙ୍କ ଅସାଧାରଣ ଦକ୍ଷତା ଓ ଉଦ୍ୟମ ଫଳରେ ତାଙ୍କର ସାହିତ୍ୟିକ ପ୍ରତିଭା ଓ ଅଭିନୟ-କୁଶଳତାର ପ୍ରଶଂସା ସାରା ଇଉରୋପରେ ତାଙ୍କୁ ଉଚ୍ଚକୋଟୀର କଳାକାର ଭାବରେ ପରିଚିତ କରାଇଥିଲା ।

କେମ୍ୟୁଙ୍କ ଅନ୍ୟ ଗୋଟିଏ ବିଶିଷ୍ଟ ଗୁଣ ହେଉଛି ବିଭିନ୍ନ ଖେଳାଖେଳି ପ୍ରତି ଆଗ୍ରହ । ସେ ଜଣେ ଉଚ୍ଚକୋଟୀର ଫୁଟବଲ୍ ଖେଳାଳୀ ଥିଲେ । ସେ ନିଜେ ଏହି ସମ୍ବନ୍ଧରେ ଲେଖିଛନ୍ତି ଯେ, ତାଙ୍କର ଜୀବନରେ ନୈତିକ ଜ୍ଞାନ ସେ ସେହି ଖେଳ ପଡ଼ିଆରୁ ଶିକ୍ଷାଲାଭ କରିଛନ୍ତି । ସେ ଲେଖିଛନ୍ତି-"It was on the player's field, I learnt my only lessons in moral ethics."

### କେମ୍ୟୁଙ୍କ ସାହିତ୍ୟ ସାଧନା-

କେମ୍ୟୁଙ୍କ ପ୍ରଥମ ପୁସ୍ତକ ତାଙ୍କର ଇଟାଲୀ ଓ ଜେକୋସ୍ଲୋଭିଆ ଭ୍ରମଣ ବିଷୟରେ ଲିଖିତ ହୋଇଥିଲା । ଦ୍ୱିତୀୟ ମହାସମରର ପ୍ରାରମ୍ଭରେ ସେ Naucea ନାମକ ଏକ ପ୍ରବନ୍ଧ ପୁସ୍ତକ ଲେଖିଥିଲେ । ଆରବୀୟ ଦାବୀ ସମର୍ଥନ କରି ବିଭିନ୍ନ ସମ୍ବାଦପତ୍ରମାନଙ୍କରେ

ସେ ଅନେକ ପ୍ରବନ୍ଧ ପ୍ରକାଶ କରାଇଥିଲେ । ୧୯୪୦ ମସିହାରେ Combat ନାମକ ଏକ ଉଚ୍ଚକୋଟୀର ପତ୍ରିକା ବାହାର କଲେ । ୧୯୪୭ ମସିହାରେ ତାଙ୍କର ଦୁଇଖଣ୍ଡି ଉପନ୍ୟାସ ପ୍ରକାଶିତ ହେଲା । ପ୍ରଥମ ଉପନ୍ୟାସଟି ହେଉଛି The outsider ଏବଂ ଦ୍ୱିତୀୟ ଉପନ୍ୟାସଟି ହେଉଛି The Myth of Sisphus.

ଏହା ଦ୍ୱାରା କେମ୍ୟୁଙ୍କ ସାହିତ୍ୟିକ ପ୍ରତିଭା ସାରା ଫ୍ରାନ୍ସ ଦେଶରେ ସର୍ବବିଦିତ ହୋଇ ଉଠିଲା । ଜୀବନର ବିଭିନ୍ନ ଘାତପ୍ରତିଘାତ ମଧ୍ୟରେ ରହି ସୁଦ୍ଧା, ସେ ସାହିତ୍ୟ-ସାଧନାକୁ ଜୀବନର ଏକମାତ୍ର ଅବଲମ୍ବନ ହିସାବରେ ଗ୍ରହଣ କରିଥିଲେ । ଆଲବେୟାର କେମ୍ୟୁଙ୍କ ସାହିତ୍ୟର ଆଦର୍ଶ ସ୍ଥିତିବାଦୀ ଦର୍ଶନ Existentialism ଉପରେ ପର୍ଯ୍ୟବେସିତ । ତାଙ୍କ ଦୃଷ୍ଟିକୋଣରେ ଜୀବନର ସ୍ଥିତି ଅର୍ଥହୀନ ଓ ଅବାସ୍ତବ । ତାଙ୍କର ଏହି ଦୃଷ୍ଟିକୋଣ ତାଙ୍କର ପୁସ୍ତକ The Myth of Sisphus ରେ ବିଶଦ ଭାବରେ ବର୍ଣ୍ଣିତ ହୋଇଛି । ସିସ୍‌ଫିସ୍ ନାମକ ଜଣେ ବ୍ୟକ୍ତି ଅନନ୍ତକାଳ ପାଇଁ ଖଣ୍ଡିଏ ପ୍ରସ୍ତରକୁ ଠେଲି ପାହାଡ଼ ଉପରକୁ ନେବା ଚେଷ୍ଟା କରେ ଏବଂ ବାରମ୍ବାର ପ୍ରସ୍ତର ଖଣ୍ଡଟି ତଳକୁ ଗଡ଼ିଆସେ । ପୁଣି ସେ ତାକୁ ଠେଲିଠେଲି ଉପରକୁ ନିଏ । ଏହି ପ୍ରକାର ନିରର୍ଥକ କର୍ମରେ ସେ ବ୍ୟାପୃତ ରହି ମଧ୍ୟ ସେ ଅପରିସୀମ କ୍ଳାନ୍ତି ମଧ୍ୟରେ ଆନନ୍ଦ ପାଏ ।

ପ୍ରସ୍ତରଖଣ୍ଡିର ଉତ୍‌ଥାନ ଓ ପତନ ମାନବ ଜୀବନର ସ୍ଥିତିର ଏକ ପ୍ରତୀକ । ସିସ୍‌ଫିସ୍ ଯେପରି ଜୀବନର ଏବଂ ବଞ୍ଚିବାର ବିଫଳତା ପ୍ରତି ଦୃଷ୍ଟିପାତ ନକରି ଅଶେଷ ଧୈର୍ଯ୍ୟ ଓ ଆନନ୍ଦ ଅନୁଭବ କରୁଥିଲା ସେହିପରି ମଣିଷ ତା'ର ସମସ୍ତ ପ୍ରକାର ଦୁଃଖ ପରିସ୍ଥିତି ମଧ୍ୟରେ ବଞ୍ଚିବାର ଆନନ୍ଦ ଅନୁଭବ କରିବାକୁ ପଡ଼ିବ । ଅନ୍ୟାନ୍ୟ ସ୍ଥିତିବାଦୀ ଦାର୍ଶନିକ ପରି, ଆଲବେୟାର କେମ୍ୟୁ ନାସ୍ତିକ ନଥିଲେ କି ଧ୍ୱଂସବାଦୀ ବିପ୍ଳବାତ୍ମକ ଦର୍ଶନରେ ବିଶ୍ୱାସ କରୁନଥିଲେ । ଇତିହାସର ଅତୀତ ଘଟଣାବଳୀ ମଧ୍ୟରେ କେମ୍ୟୁ ପ୍ରକୃତରେ ଦେଖିପାରିଛନ୍ତି, "ପାପର ଅତଳ ବିଭତ୍ସତା ଓ ଧ୍ୱଂସବାଦୀ ଚିନ୍ତାଧାରାର ଅନ୍ଧକାର" । ତେଣୁ ସେ ବିଶ୍ୱାସ କରୁଥିଲେ, ଜୀବନକୁ ସୁଖୀ ଓ ଶାନ୍ତିମୟ କରିବାକୁ ହେଲେ, ଇତିହାସର ଏହି ଧ୍ୱଂସନ୍ମୁଖୀ ଗତିକୁ ପରିବର୍ତ୍ତନ କରିବା ଦରକାର । ସେ ଭାବୁଥିଲେ ଯେ ଗଭୀର ମାନବିକତାରେ ଉଦ୍‌ବୁଦ୍ଧ ହୋଇ ମାନବ ସଂସ୍କୃତିର ଉନ୍ନତି କରିବା ଦ୍ୱାରା ହିଂସାତ୍ମକ ଉଗ୍ର ଚିନ୍ତାଧାରା ଦୂର କରିପାରିଲେ ସଭ୍ୟତାର ଗତି ବଦଳି ଯିବ । ତାଙ୍କର ଏକ ବିଖ୍ୟାତ ଗବେଷଣାମୂଳକ "The Rebel" ରେ ଲେଖିଛନ୍ତି – Intellectual ceasarism hovers over every activity of the businessman and the Philosopher placed in the crucile Nietzchiam Philosophy ; rebllion in the intoxication of freedom

ends in biological historical caesarism... କେମ୍ୟୁଙ୍କ ଏହି ପ୍ରକାର ଉଚ୍ଚକୋଟୀର ସାହିତ୍ୟିକ ପ୍ରତିଭା ଓ ଆଦର୍ଶ ଯୋଗୁଁ ୧୯୫୭ ମସିହାରେ ତାଙ୍କୁ ପୃଥିବୀର ଶ୍ରେଷ୍ଠ ସମ୍ମାନ ନୋବେଲ ପୁରସ୍କାର ଦ୍ୱାରା ସମ୍ମାନିତ କରାଯାଇଥିଲା ।

କେମ୍ୟୁଙ୍କ ପ୍ରତ୍ୟେକ ଲେଖାରେ ମଣିଷର ସମାଜ ଓ ଜୀବନର ସୁଖଦୁଃଖ, ପାପପୁଣ୍ୟ ସବୁକିଛି ଅତି ନିଖୁଣ ଭାବରେ ବର୍ଣ୍ଣିତ ହୋଇଛି । ତାଙ୍କର ବିଭିନ୍ନ ଉପନ୍ୟାସରେ ଚରିତ୍ରଗୁଡ଼ିକ ବାସ୍ତବଧର୍ମୀ ଓ ପ୍ରତୀକାତ୍ମକ ।

୧୯୪୨ ମସିହାରେ ଲିଖିତ ତାଙ୍କର ଉପନ୍ୟାସ L Estranger "The Outsider" ଉପନ୍ୟାସର ଆଲଜିୟର୍ସର ସେହି ମେଉରସଲଟ କିରାଣୀର ଚରିତ୍ର ଅତି ମନୋମୁଗ୍ଧକର । ତାଙ୍କର ମନ୍ତ୍ରମୁଗ୍ଧ ଉଦାସୀନତା, କର୍ମପ୍ରବଣତା ପାଠକର ମନକୁ ସ୍ପର୍ଶ କରିବ । କେତେଗୁଡ଼ିଏ ଅବାଞ୍ଛିତ ପରିସ୍ଥିତିରେ ଜଡ଼ିତ ହୋଇ ପଡ଼ିଥିବାରୁ ସେ ଜଣେ ଆରବୀୟ ଲୋକକୁ ହତ୍ୟା କରିଥିଲେ । ତେଣୁ ତାହା ତାଙ୍କର ପ୍ରାଣଦଣ୍ଡରେ ପରିଣତ ହେଲା ।

କେମ୍ୟୁଙ୍କ ଅନ୍ୟ ଏକ ବିଖ୍ୟାତ ଉପନ୍ୟାସ Plagueର ଡାକ୍ତର ରିଉଙ୍କ ଚରିତ୍ର ମଧ୍ୟ ଅତି ବାସ୍ତବଧର୍ମୀ । ଡାକ୍ତର ରିଉଙ୍କ ପ୍ଲେଗ୍ ରୋଗଗ୍ରସ୍ତ ହଜାର ହଜାର ରୋଗୀଙ୍କ ପ୍ରାଣମୂର୍ଚ୍ଛା ସେବା ମନରେ ଗଭୀର ମାନବିକତାର ପ୍ରେରଣା ଆଣିଦିଏ ।

ସେହିପରି ପତନ "The Fall" ଉପନ୍ୟାସର ଜଣେ ଫରାସୀ ଓକିଲ ଚରିତ୍ର ଏବଂ ନିଜ ଦ୍ୱାରା ନିଜର ଚରିତ୍ର ବିଶ୍ଳେଷଣ ତଥା ସମସାମୟିକ ଚରିତ୍ରଗୁଡ଼ିକର ଦୋଷ ଦୁର୍ବଳତାର ଚିତ୍ର ଆଧୁନିକ କଳୁଷିତ ସମାଜ ଆଗରେ ଖୁବ୍ ଇଙ୍ଗିତପୂର୍ଣ୍ଣ । ସମାଜର ସମସ୍ତ ପ୍ରକାର ଅନ୍ୟାୟ ବିରୁଦ୍ଧରେ ସକଳ ପ୍ରକାର କୌଶଳତା ବିରୁଦ୍ଧରେ ବିଦ୍ରୋହକରି ହିତକର ସୃଜନଶୀଳ ମନୋଭାବ ନେଇ ଜୀବନକୁ ସଦା କର୍ମମୟ କରିବା ହିଁ କେମ୍ୟୁଙ୍କ ସାହିତ୍ୟିକ ଆଦର୍ଶ ମଧ୍ୟରେ ଏକ ମହତ ବୈଶିଷ୍ଟ୍ୟ । ପ୍ରତ୍ୟେକ ମଣିଷର ସୁଖଦୁଃଖ, ପାପ ଅନ୍ୟାୟ ଜୀବନର ବିଫଳତାକୁ ସମ୍ବେଦନଶୀଳ ହୃଦୟରେ ହୃଦୟଙ୍ଗମ କରିବାକୁ କେମ୍ୟୁ କବି ଓ ସାହିତ୍ୟିକମାନଙ୍କୁ ଉଦ୍‌ବୋଧନ ଦେଇଛନ୍ତି । ସେ ସେଥିପାଇଁ ଲେଖିଛନ୍ତି –I know, nothing more difficult than the art of knowing each other in this world in to which we have been born, through choice of ours. ଆଜି ଆଲବେୟାର କେମ୍ୟୁ ଇହ ଜଗତରେ ନାହାନ୍ତି, କିନ୍ତୁ ତାଙ୍କର ସାହିତ୍ୟିକ ଚିନ୍ତାଧାରା ପୃଥିବୀର ଅଗଣିତ ନରନାରୀଙ୍କ ମନକୁ ନୂତନ ମାନବିକତାର ଚିନ୍ତାଧାରାରେ ଉଦ୍‌ବୁଦ୍ଧ କରୁଛି ।



# ଆଧୁନିକ କବିତାରେ ମୃତ୍ୟୁ-ଚେତନା

ପ୍ରେମ ଓ ମୃତ୍ୟୁ ଜୀବନର ଚିରନ୍ତନ ସତ୍ୟ । ସୃଷ୍ଟିର ସକଳ ପଦାର୍ଥର ବିଲୟ ରହିଛି । ସମସ୍ତ ଜୀବଜଗତର ମୃତ୍ୟୁ ଅବଶ୍ୟମ୍ଭାବୀ । ସୃଷ୍ଟି-ସ୍ଥିତି ସତ୍ୟ, ଏହା ସୃଷ୍ଟିର ପ୍ରବାହର ଅଲଂଘନୀୟ ନିୟମ । ପୌରାଣିକ ସାହିତ୍ୟରେ ଆରଣ୍ୟକ ଜୀବନର ଚରିତ୍ର ମଧ୍ୟରେ ମୃତ୍ୟୁ ଏକ ଦେବତା । ସମସ୍ତ ଉନ୍ନତ ମୂଲ୍ୟବୋଧ ପାପ ମୃତ୍ୟୁର ଶ୍ରେଷ୍ଠ ବିଚାରକ । ଜୀବନର ପାପ ପୁଣ୍ୟର ବିଚାର ସେହି ମୃତ୍ୟୁ ଦେବତାଙ୍କ ଦରବାରରେ ନିର୍ଦ୍ଧାରିତ ହୋଇଥାଏ । ଅତ୍ୟଧିକ ପାପୀ ନାରକୀୟ କର୍ମରେ ଲିପ୍ତ ଥିବା ନରନାରୀ ହିଁ ମୃତ୍ୟୁ ଦେବତାଙ୍କ ନରକ ଯନ୍ତ୍ରଣାରେ ଦଣ୍ଡିତ ହୁଅନ୍ତି । ପୁଣ୍ୟାତ୍ମା ମାନେ ହିଁ ମୃତ୍ୟୁ ପରେ ସ୍ୱର୍ଗାରୋହଣ କରନ୍ତି । ମହାଭାରତ ଯୁଦ୍ଧର ଅବସାନ ପରେ ଏକମାତ୍ର ଧର୍ମବୀର ଯୁଧିଷ୍ଠିର କୁକୁର ସହ ସ୍ୱର୍ଗାରୋହଣ କରିଥିଲେ । କଠୋପନିଷଦରେ ବର୍ଣ୍ଣିତ ହୋଇଛି - ଏକଦା ଶ୍ୱେତକେତୁ ପିତାଙ୍କ ଦ୍ୱାରା ଅଭିଶପ୍ତ ହୋଇ ମୃତ୍ୟୁ ଦେବତାଙ୍କ ପାଖରେ ପହଞ୍ଚିଥିଲେ । ସେ ମୃତ୍ୟୁ ଦେବତାଙ୍କ ପାଖରେ ଯେଉଁ ସତ୍ୟ ଉପଲବ୍ଧି କରିଥିଲେ ତାହା ହେଉଛି ଜୀବନରେ ଯେ ସମସ୍ତ ପ୍ରକାର ପ୍ରକୃତିକୁ ଜୟକରି ବ୍ରହ୍ମଚେତନା ଉପଲବ୍ଧି କରିଅଛି- ସେହି କେବଳ ଜୀବନରେ ଅମୃତତ୍ୱ ଉପଲବ୍ଧି କରିପାରେ ଏବଂ ସେ ମୃତ୍ୟୁଚେତନାର ଯନ୍ତ୍ରଣାରୁ ମୁକ୍ତିଲାଭ କରେ ।

"ଅଶର୍ବ ସ୍ପର୍ଶମ୍-ରୂପମ୍-ବ୍ୟୟମ ତଥା ରସମ୍ ନିତ୍ୟମ୍ ଗନ୍ଧ ବର୍ଜୟେଦ୍
ଅନାଦ୍ୟନନ୍ତଂ ମହତଃ ପରଂ ଧ୍ରୁବଂ ନିତାଦ୍ୟତଂ ମୃତ୍ୟୁ ମୁଖାଦ୍ ପ୍ରମୁଚ୍ୟତେ ।"

(କଠୋପନିଷଦ-୧)

ଅର୍ଥାତ୍ ଯିଏ ଶବ୍ଦ, ସ୍ପର୍ଶ, ରୂପ, ଗନ୍ଧ, ରସ, କ୍ଷୟ ଦୃଶ୍ୟାତୀତ ବିଚାରକୁ ଉପଲବ୍ଧି କରିପାରିଛି ସେହି କେବଳ ମୃତ୍ୟୁମୁଖରୁ ମୁକ୍ତ ହୋଇପାରେ । ଏଣୁ ଏହି ଉପାଖ୍ୟାନର ସତ୍ୟ ହେଉଛି-ମୃତ୍ୟୁ ଚେତନା ହିଁ ମଣିଷକୁ ମୃତ୍ୟୁ ଭୟରୁ ମୁକ୍ତ କରି ଏକ ସତ୍ୟ-ସୁନ୍ଦର ଭଗବଦ୍ ଚେତନାରେ ଉଦ୍‌ଭାସିତ କରି ଅନ୍ଧକାରରୁ ଆଲୋକ ଆଡ଼କୁ ନେଇଯାଏ ।

ଏଇ ଭଗବତ୍ ଚେତନାକୁ ଉପଲବ୍ଧି କରିବାକୁ ହେଲେ ମଣିଷକୁ ପ୍ରବୃତ୍ତିର ମାର୍ଗ ପରିତ୍ୟାଗ କରି ନିବୃତ୍ତିର ମାର୍ଗରେ ଅଗ୍ରସର ହେବାକୁ ହେବ, ଏଥିପାଇଁ ଦରକାର ବୈରାଗ୍ୟର ସାଧନା ।

ଏହି ପ୍ରକାର ଦୈନିକ ଚିନ୍ତାରେ ଉଦ୍‌ବୁଦ୍ଧ ହୋଇ ଓଡ଼ିଶାର ପ୍ରାଚୀନ କବିମାନେ ମୃତ୍ୟୁର ଭୟାବହତା ଓ ନଶ୍ୱର ଶରୀରର ନଗ୍ନତାର ରୂପ ବର୍ଣ୍ଣନା କରିଛନ୍ତି ।

କବି ଗାଇଛନ୍ତି –

**ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା,**
**ଛ'ଖଣ୍ଡି କାଠ ହେବ ତୋ' ପାଇଁ ଲୋଡ଼ା ।**

(ଭକ୍ତଚରଣଙ୍କ ମନବୋଧ ଚଉତିଶା)

ସେହି ଦୃଷ୍ଟିକୋଣରୁ ମଧ ଭକ୍ତକବି ମଧୁସୂଦନ ରାଓ ଗାଇଛନ୍ତି –

**''ରେ ଆତ୍ମନ୍ ନିଦ୍ରା ପରିହରି**
**ଫେଡ଼ି ଚିନ୍ତାର ଲୋଚନ କର କର ନିରୀକ୍ଷଣ**
**ନିଃଶବ୍ଦେ ଜୀବନ–ସ୍ରୋତ ଧାଇଁଛି କିପରି**
**ଭେଟିବାକୁ ମୃତ୍ୟୁ–ସିନ୍ଧୁ–କରାଳ–ଲହରୀ ।''**

(ଭକ୍ତ କବି ମଧୁସୂଦନ ରାଓ)

ରାଧାନାଥ ଯୁଗରେ କବିବର ରାଧାନାଥ ତାଙ୍କର ''ମହାଯାତ୍ରା'', ''ପାର୍ବତୀ'' କାବ୍ୟ ଓ ''ଦୁର୍ଯ୍ୟୋଧନଙ୍କର ରକ୍ତ ନଦୀର ସନ୍ତରଣ'' କବିତାରେ ନଶ୍ୱରତା ଓ ଅନ୍ତିମ ପରିଣତିର ବିଭତ୍ସତାର ଅତି ମର୍ମସ୍ପର୍ଶୀ ବର୍ଣ୍ଣନା କରି ମୃତ୍ୟୁକୁ ଏକ ମହାକାଳ ରୂପେ ଚିତ୍ରଣ କରିଅଛନ୍ତି ।

**ଏ ଜୀବ ନୁହଁଇ ସ୍ଥିର ସ୍ଥିରଟି ମରଣ**
**ମାଟିର ଏ ଘଟ ନିଶ୍ଚେ ମିଶିବ ମାଟିରେ,**
**ସର୍ବକ୍ରୁର କାଳ ମହାବଳୀଠାରୁ ବଳୀ ।**

ମହାଯାତ୍ରା – ରାଧାନାଥ ଗ୍ରନ୍ଥାବଳୀ ୧୭୦ ପୃଷ୍ଠା

ପୁଣି ସେ ଗାଇଛନ୍ତି –

**ଅଦ୍ଭୁତ ସେ ଚୋର ତାକୁ ରୋଧିଲେ ତୋରଣ,**
**ପାଚେରୀ ଲଘିଂଣ ପୁରେ ପଶେ ଅନାୟାସେ,**
**ତାରକ–କୀଳିତ ଗୃହେ ପଶେ ଅକୁଣ୍ଠିତେ**
**ନଫିଟାଇ ସେ ତାଲାକୁ ଖଣ୍ଡଶିରୋମଣି,**
**ସେ ଆସି ଖୋଜିବା ଆଗୁଁ ଏ ଭବର ମାୟା**
**ତେଜି ହେ ବୀରେନ୍ଦ୍ର ଚାଲ ଖୋଜିବା କାଳକୁ ।''**

(ମହାଯାତ୍ରା– ରାଧାନାଥ ଗ୍ରନ୍ଥାବଳୀ ୧୭୦ ପୃଷ୍ଠା)

'ପାର୍ବତୀ' କାବ୍ୟରେ କଞ୍ଚୁକୀର ଉକ୍ତି ମଧ୍ୟରେ ରାଧାନାଥ ନଶ୍ୱର ମନୁଷ୍ୟ ଜୀବନର ଅନ୍ତିମ ପରିଣତି କଥା ଅତି ସରଳ ଭାଷାରେ ଲେଖିଛନ୍ତି-

'କେହି ରହିନାହିଁ ରହିବେନାହିଁଟି
ଭବରଙ୍ଗ ଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳ ବଳେ ।'

(ପାର୍ବତୀ ରାଧାନାଥ ଗ୍ରନ୍ଥାବଳୀ ୧୧୯ ପୃଷ୍ଠା)

ଗଙ୍ଗେଶ୍ୱରଙ୍କର ପାପକର୍ମରେ ଜର୍ଜରିତା ବୃଦ୍ଧା କଞ୍ଚୁକୀ ରାଜାଙ୍କର ଧର୍ମ ପ୍ରତି ଆସକ୍ତି କଥା ଚିନ୍ତା କରି ଜୀବନର ଅସାରତା ଉପଲବ୍ଧି କରି ହତବାକ୍ ହୋଇ ପଡ଼ିଛନ୍ତି । ତେଣୁ ସେ ଗାଇଛି -

''କ୍ରୂର କାଳଚକ୍ର ଘୂରୁଛି ମସ୍ତକେ
ଜାଣି ଲୋକେ ହୋନ୍ତି ବଣା,
କି ପାଇଁ ଲୋଡ଼ନ୍ତି ରଣଭୂମି ଭୂପ
କୃତାନ୍ତ-ରଙ୍ଗ-ଅଗଣା ?''

(ପାର୍ବତୀ ରାଧାନାଥ ଗ୍ରନ୍ଥାବଳୀ ୧୨୦ ପୃଷ୍ଠା)

ପୁଣି ରାଧାନାଥ ମଣିଷର ଅବିମୃଷ୍ୟକାରିଣୀ ଓ ମୋହମାୟାବିଷ୍ଟ ମନର ଅସାରତା କଥା ମୃତ୍ୟୁ-ଚିନ୍ତା ମାଧ୍ୟମରେ ସୂଚାଇ ଦେବାକୁ ଯାଇ ଲେଖିଛନ୍ତି -

''ଏ ଭବ ସଂସାରେ ସର୍ବଗ୍ରାସୀ କାଳ
ବାତ୍ୟା ବହେ ଅବିରତ,
ଏହା ଜାଣି ଲୋକେ କେଉଁ ଲାଭ ଆଶେ
କଳହେ ହୁଅନ୍ତି ରତ ?
ଗଜ କଚ୍ଛପର କଳି ପ୍ରାୟେ ମହା
ଦମ୍ଭେ କରୁଥାନ୍ତି ଲୀଳା,
ମନେ ନାହିଁ ଦିନେ କାଳ-ପକ୍ଷୀରାଜ
ଉପରୁ ମାରିବ ଚିଲା ।''

('ପାର୍ବତୀ' ରାଧାନାଥ ଗ୍ରନ୍ଥାବଳୀ ୧୨୦ ପୃଷ୍ଠା)

ଗଙ୍ଗେଶ୍ୱରଙ୍କର ପାପକର୍ମ ତାଙ୍କର ରାଜଧାନୀ ପରିବେଶକୁ କିପରି ଭୟପ୍ରଦ କରିଛି ଓ ପାର୍ବତୀ ହୃଦୟର ନୈରାଶ୍ୟ ଓ ଶୂନ୍ୟତା ଆଣି ଦେଇଛି, ତାହା ଅତି ମର୍ମସ୍ପର୍ଶୀ ଭାଷାରେ ରାଧାନାଥ ବର୍ଣ୍ଣନା କରିଛନ୍ତି - ଆକାଶରୁ ଉଲ୍କା ଖସି ପଡୁଛି, ମନ୍ଦିର ମଣ୍ଡପରେ ଗୃଧ୍ର ଥରକୁ ଥର ବସୁଛନ୍ତି - ପେଚକ ରାବୁଛି । ଏହିପରି ଏକ ଭୟାବହ

ଦୃଶ୍ୟ ପାର୍ବତୀ କାବ୍ୟରେ ଦେଖିବାକୁ ମିଳେ । ପାପପୂର୍ଣ୍ଣ ଜୀବନର ଅନ୍ତଃସାରଶୂନ୍ୟତା, ବିଭତ୍ସତା, ନୈରାଶ୍ୟ ଓ ମୃତ୍ୟୁ ବର୍ଣ୍ଣନା ଅତି ମନୋଜ୍ଞ ହୋଇଛି ।

ତାଙ୍କର "ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ" କବିତାରେ ମୃତ୍ୟୁ ଭୟର ବର୍ଣ୍ଣନା ସଫଳ ହୋଇପାରିଛି । ମୃତ୍ୟୁ ଭୟରେ ଦୁର୍ଯ୍ୟୋଧନ ବ୍ୟାସ ସରୋବରର ପ୍ରବେଶ ସମୟରେ କୌରବ ବୀରମାନଙ୍କର ବର୍ଣ୍ଣନା ଅତି କରୁଣାତ୍ମକ ହୋଇଛି । କୃତ ପାପକର୍ମରେ ଜର୍ଜରିତ ହୋଇ, ମୃତ୍ୟୁ ଭୟରେ ଆତଙ୍କିତ ହୋଇ ଦୁର୍ଯ୍ୟୋଧନ ଅତି ବିକଳରେ ଖୋଜୁଛି ଆଶ୍ରୟ । ସମ୍ମୁଖରେ ତା'ର ରକ୍ତନଦୀରେ କୁଢ଼କୁଢ଼ ଶବ ଭାସୁଛି । ପ୍ରାକୃତିକ ପରିବେଶ, ଦୁର୍ଯ୍ୟୋଧନଙ୍କର ଜୀବନ-ବ୍ୟାକୁଳତା ଓ ମୃତ୍ୟୁଭୟର ବର୍ଣ୍ଣନା କରିବାକୁ ଯାଇ ରାଧାନାଥ ଲେଖିଛନ୍ତି -

"ପଳାଇଲେ ତ୍ରସ୍ତେ ବ୍ୟାସସରୋବର ମୁଖେ
ବୁଡ଼ନ୍ତେ ଭାସ୍କର ପଥେ ଆସିଲା ଶର୍ବରୀ,
ଏ ସମୟେ କାଦମ୍ବିନୀ ଘୋଟି ନଭସ୍ଥଳେ
ଭୀମ ପ୍ରଭଞ୍ଜନ ବହି ଅବିରଳ ଧାରେ
ଢାଳିଲା ସଲିଳପୂର ବୁହାଇ ସମ୍ମୁଖେ
ସୁଗଭୀର ଖରସ୍ରୋତ ଲୋହିତ ଶୋଣିତ
ଭାସି ଯାଉଥିଲା ଯହିଁ ଶବ ରାଶିରାଶି ।"

(ରାଧାନାଥ ଗ୍ରନ୍ଥାବଳୀ ୩୪୮ ପୃଷ୍ଠା)

ସେ ପୁଣି ଲେଖିଛନ୍ତି -

"ମୋର ଏ ଜୀବନେ ବାବୁ, କିସ କାର୍ଯ୍ୟ ଆଉ !
ଜୀଇଁଛି ନିର୍ଲଜ୍ଜ ମୁଁ ଯା ତୁମ୍ଭଙ୍କୁ ମରାଇ !
ମୁଁ ତ ପହଁରୁଛି ଏବେ ରକତ ଲହରୀ
ଏ ପ୍ରବାହେ ପାରି କରିଦେବୁ କି ତୁ ମୋତେ ?

(ରାଧାନାଥ ଗ୍ରନ୍ଥାବଳୀ ୩୪୮ ପୃଷ୍ଠା

ମୃତ୍ୟୁ ଏକ ଚେତନା, ଯେଉଁ ଚେତନା ମନରେ ଆଣିଦେବ ବୈରାଗ୍ୟ ଓ ସଂସାର ମୋହମାୟାରୁ ମୁକ୍ତି । ପ୍ରବୃତ୍ତି ପରିବର୍ତ୍ତେ ଆଣିଦେବ ନିବୃତ୍ତି । ଜୀବନର ସମସ୍ତ କର୍ମକୁ ଦୁଇଟି ଭାଗରେ ବିଭକ୍ତ କରାଯାଇଛି - ପାପ ଓ ପୁଣ୍ୟ । ରାଧାନାଥଙ୍କ କାବ୍ୟରେ ମୃତ୍ୟୁଭୟ ଓ ପାପ-ଚେତନାରେ ଦଗ୍ଧ ହୋଇ ଦୁର୍ଯ୍ୟୋଧନ ରକ୍ତନଦୀରେ କୁଢ଼କୁଢ଼ ଶବ ଦେଖିଛନ୍ତି । ତାଙ୍କର ହୃଦୟରେ ବଞ୍ଚିବାର ଦୁରନ୍ତ ବ୍ୟାକୁଳତା ।

ରାଧାନାଥ ଯୁଗର କବିତାରେ ଏହି ଚେତନା ବାସ୍ତବଧର୍ମୀ ନ ହୋଇ ଗତାନୁଗତିକତା ପ୍ରବାହରେ ପ୍ରବାହିତ । ତତ୍‌କାଳୀନ ସମାଜ ଜୀବନର ଦୁଃଖ, ଦୁର୍ଘଟଣା,

ବ୍ୟର୍ଥତା, ନୈରାଶ୍ୟକୁ ଚେତନାର ବିଭିନ୍ନ ସ୍ଫୁଲିଙ୍ଗ ଆକାରରେ କବିତା ପ୍ରକାଶ କରି ପାରିନାହିଁ । ଏଥିରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀର ଅଭାବ ରହିଛି, କିମ୍ବା ଦୟା ମାଧମରେ ପୌରାଣିକ ଚରିତ୍ର ମୁହଁରେ ସେହି ଚିରାଚରିତ ପାପ ଓ ପୁଣ୍ୟ ଚିତ୍ରଣ ଦ୍ୱାରା ମୃତ୍ୟୁ-ଚେତନା ଏକ ନୀତିବାଣୀରେ (Diadectic) ପର୍ଯ୍ୟବେଶିତ ହୋଇଛି । ଏହା ହିଁ ଥିଲା କବିବର ରାଧାନାଥଙ୍କର ମୃତ୍ୟୁ-ଚେତନାର ସ୍ୱରୂପ ।

ତଥାପି ରାଧାନାଥଙ୍କ କବିତାର ଛନ୍ଦ ଓ ମୃତ୍ୟୁର ଚିତ୍ରଣ ହୃଦୟସ୍ପର୍ଶୀ ହୋଇଛି ଏଥିରେ ସନ୍ଦେହ ନାହିଁ ।

ଉନବିଂଶ ଶତାବ୍ଦୀ ହେଉଛି ଯୁଗ-ଯନ୍ତ୍ରଣାର ଯୁଗ । ଜୀବନ ଓ ସମାଜର ମୂଲ୍ୟବୋଧରେ ଅଭୂତପୂର୍ବ ସଙ୍କଟ ଦେଖାଦେଇଛି ଏହି ଯୁଗରେ । ୧୯୧୪ ମସିହାରେ ବିଶ୍ୱ ମହାଯୁଦ୍ଧ ସଂଘଟିତ ହେଲା । ୧୯୩୯ରେ ଦ୍ୱିତୀୟ ମହାଯୁଦ୍ଧ ଦେଶ, ଦେଶ ଜାତି ଓ ଜାତି ମଧ୍ୟରେ ଏକ ନାରକୀୟ ଭୟାବହତା ସୃଷ୍ଟି କରିଥିଲା । ହିରୋସୀମା ନାଗାସାକି ଉପରେ ପୃଥିବୀରେ ପ୍ରଥମ ଥର ପାଇଁ ଆଣବିକ ବୋମା ନିକ୍ଷେପ କରାଯାଇ ଅସଂଖ୍ୟ ମଣିଷଙ୍କୁ ଦଗ୍ଧୀଭୂତ କରି ହତ୍ୟା କରାଗଲା । ଏହି ଦୁଇଟି ମହାସମରର ପ୍ରଭାବରେ ମାନବ ଜୀବନ ଦର୍ଶନରେ ଏକ ଆଲୋଡ଼ନ ଏବଂ ସଙ୍କଟ ଦେଖାଦେଲା । ମଣିଷର ଚିନ୍ତାଧାରା ସନ୍ଦେହ, ଆଶଙ୍କା ଓ ଶୂନ୍ୟତାବୋଧର କୁହେଳିକାରେ ଆଚ୍ଛନ୍ନ ହେଲା । ବିଜ୍ଞାନର ଅଭୂତପୂର୍ବ ପ୍ରଗତିରେ ନୂତନ ସମାଜ ଗଠନ ପାଇଁ ଯେଉଁ ଆତ୍ମପ୍ରତ୍ୟୟ ଓ ଯେଉଁ ଉଦ୍ଦୀପନା ସୃଷ୍ଟି ହେଉଥିଲା ତାହା ହ୍ରାସ ପାଇବାକୁ ଲାଗିଲା । ଚିରାଚରିତ ଧର୍ମ, ସାମାଜିକ ଅନୁଷ୍ଠାନ, ରାଜନୈତିକ ଆଦର୍ଶ ଓ ମତବାଦ ପ୍ରତି ମନରେ ବିଦ୍ରୋହ ଓ ବିଦ୍ୱେଷ ସୃଷ୍ଟି ହେଲା । କ୍ରମେ କ୍ରମେ ସାମୟିକ ଧ୍ୱଂସବିଧ୍ୱସ୍ତ, ସମାଜର ଦୁଃସ୍ଥିତି ବ୍ୟତୀତ କେତେକ ଯୁଗାନ୍ତକରୀ ଚିନ୍ତାଧାରା ବିଂଶ ଯୁଗର ମାନବ ଚେତନାକୁ ଦ୍ୱିଧାବିଭକ୍ତ ଓ ଦୋଦୁଲ୍ୟମାନ ଅବସ୍ଥାକୁ ନେଇଗଲା । ଫ୍ରଏଡ଼ୀୟ ମନସ୍ତତ୍ତ୍ୱରେ ଅବଚେତନ ମନର ବିଶ୍ଳେଷଣ, ଡାରଉଇନଙ୍କ ବିବର୍ତ୍ତନବାଦ, ହାଭଲକ୍ ଏଲିସଙ୍କ ଯୌନତତ୍ତ୍ୱ, ଆଇନ୍‌ଷ୍ଟାଇନ୍‌ଙ୍କ ଆପେକ୍ଷିକ ତତ୍ତ୍ୱ, କାର୍କିଗାର୍ଡ଼ ଓ ଜାଁପଲ ସାର୍ତ୍ରେଙ୍କ ସ୍ଥିତିବାଦ ଓ ମାର୍କସଙ୍କ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଆଧୁନିକ କବିର କାବ୍ୟିକ ଚେତନାକୁ ନୂତନ ଦିଗ୍‌ଦର୍ଶନ ଯୋଗାଇ ଦେଲା । ଫଳରେ ଚେତନାର ସ୍ରୋତ ସରଳରୈଖିକ ଗତିରେ ଗତି ନ କରି ବିଭିନ୍ନ ଗତିରେ ପ୍ରବାହିତ ହେଲା । ଜୀବନ ଦର୍ଶନରେ ଏ ପ୍ରକାର ବିପ୍ଳବ ବ୍ୟତୀତ କାବ୍ୟିକ ଅଭିବ୍ୟକ୍ତିର ଆଙ୍ଗିକରେ ମଧ୍ୟ ଆଲୋଡ଼ନକାରୀ ପରିବର୍ତ୍ତନ ଦେଖାଦେଲା । ଏହି ନୂତନ ଶୈଳୀର ପରିବର୍ତ୍ତନ ପ୍ରଥମେ ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ହିଁ ଆରମ୍ଭ ହୋଇଥିଲା । ଏହି ସମୟରେ ଫ୍ରାନ୍‌ସର ବଦଲେୟାର, ରାଁବୋ ପଲ୍‌ଭେଲରୀ ପ୍ରମୁଖ ପ୍ରତୀକବାଦୀ କବିମାନେ (Symbols Poets) ନୂତନ ଆଙ୍ଗୀକ, ନୂତନ ଶୈଳୀର ସୂତ୍ରପାତ କଲେ ।

ପଳାୟନବାଦୀ ରୋମାଣ୍ଟିକ୍ କବିମାନେ ପ୍ରକୃତିର ରହସ୍ୟ ମଧ୍ୟରେ ଯେଉଁ ଆନନ୍ଦ ପାଉଥିଲେ ଏହି ପ୍ରତୀକବାଦୀ କବିମାନେ ସେ ପ୍ରକାର କାଳ୍ପନିକ ଆନନ୍ଦର ଅନୁଶୀଳନ ନ କରି ମାନବିକ ସମ୍ବେଦନଶୀଳ ହୃଦୟ ନେଇ ଆତ୍ମ-ଅନ୍ୱେଷଣ ଓ ଆତ୍ମ-ଯନ୍ତ୍ରଣାରେ ଅଧିକ ଆନନ୍ଦ ପାଇବାକୁ ଲାଗିଲେ । ଶବ୍ଦର ଯାଦୁକରୀ ବିଦ୍ୟାରେ ପାରଙ୍ଗମତା ଦର୍ଶାଇ ଏମାନେ ଅମୂର୍ତ୍ତ ଭାବନାକୁ ନୂତନ ଜୀବନ୍ୟାସ ଦେଲେ । ଫଳରେ କବିତାରେ ନୂତନ ପ୍ରତୀକ (Symbols) ସୃଷ୍ଟି ହେଲା । ୧୮୫୭ରେ ବଦଲେୟାରଙ୍କ ''ପାପର ଫଳ'', ୧୮୭୧ରେ ରାଁବୋଙ୍କ 'ନରକରେ ଏକ ଋତୁ' ଏବଂ ୧୮୭୪ରେ ପଲଭେଲେରୀ, ଶବ୍ଦବିହୀନ ସଂଗୀତ କବିତା ବହି ଗୁଡ଼ିକ ପ୍ରକାଶିତ ହେଲା । ବଦଲେୟାରଙ୍କ ପାପ, ରାଁବୋଙ୍କ ବିଷାଦ ଓ ବିଦ୍ରୋହ ଏବଂ ପଲଭେଲେରୀଙ୍କ ଅନ୍ତର୍ଦ୍ୱନ୍ଦ୍ୱ ଓ ଯନ୍ତ୍ରଣା କବିତାର ବିଷୟବସ୍ତୁ ହୋଇ ଉଠିଲା ଏବଂ ଆଧୁନିକ କବିତାର ଏହି ନୂତନ ଦିଗନ୍ତର ଅରୁଣିମାରେ ସମଗ୍ର ବିଶ୍ୱର ଆଧୁନିକ କବି-ମାନସ ଉଦ୍‌ଭାସିତ ହୋଇଉଠିଲା ।

ଆଧୁନିକ କବିତାରେ ମୃତ୍ୟୁ-ଚେତନାର ମୂଳଉତ୍ସ ଦେଖିବାକୁ ମିଳେ ବଦଲେୟାରଙ୍କ ଏକ ପ୍ରାଣସ୍ପର୍ଶୀ ଅଭିବ୍ୟକ୍ତି ମଧ୍ୟରେ । ଥରେ ବଦଲେୟାର୍‌ଙ୍କୁ ନୃତ୍ୟାଳୟରେ ଦେଖି ବିସ୍ମିତ ହୋଇ ତାଙ୍କୁ ଜଣେ ପଚାରିଲେ-''ବଦଲେୟାର, ଆପଣ କ'ଣ ଏଠାରେ ?''

ବଦଲେୟାର ଉତ୍ତର ଦେଲେ – ''ମୁଁ ଏଠାରେ ମୃତ ମଣିଷଗୁଡ଼ିକର ମୁଣ୍ଡମାଳାର ଶୋଭାଯାତ୍ରା ଦେଖୁଛି ।''

ଆଧୁନିକ କବିତାରେ ଜୀବନ ଏକ ଜୀବନ୍ମୃତ ଅବସ୍ଥା(Death in life) । ଏହି ପ୍ରକାର ମୃତ୍ୟୁ ଚେତନାରେ ଆଭାସ ଦେଖିବାକୁ ମିଳେ ବଦଲେୟାରଙ୍କ ଗୋଟିଏ ଲେଖାରେ । ସେ ଲେଖିଥିଲେ –''ଶରୀର ଓ ଚୈତନ୍ୟରେ ମୁଁ ସାରାଜୀବନ ଅନୁଭବ କରୁଛି ଅତଳସ୍ପର୍ଶୀ ଗହ୍ୱରର ଶୂନ୍ୟତା, ଯାହା ନିଦ୍ରାର ଶୂନ୍ୟତା ନୁହେଁ, କର୍ମର ଶୂନ୍ୟତା, ସ୍ୱପ୍ନ, ସ୍ମରଣ, ବାସନା, ଅନୁତାପର ଶୂନ୍ୟତା । ସେହି ଶୂନ୍ୟତାର ଅନୁଭୂତି ମୋର ସୌନ୍ଦର୍ଯ୍ୟକୁ ନେଇ – ଯେମିତି ଆନନ୍ଦରେ, ସେମିତି ଭୟରେ ମଧ୍ୟ ଚର୍ଚ୍ଚା କରିଛି ମୋର ଜୀବନ ସଂଜ୍ଞାହୀନତାକୁ ।'' ତାଙ୍କର ଦର୍ଶନ ହେଲା ପାପ ଯଦି ମଣିଷର ଭାଗ୍ୟରେ ଅଲଂଘନୀୟ ଭାବେ ନିର୍ଦ୍ଧାରିତ ହୋଇଛି ତେବେ କି ପ୍ରେମ ବା ମୃତ୍ୟୁରେ ମଣିଷର ମୁକ୍ତି ନାହିଁ । ତେଣୁ ସେ ପାପକୁ ଏକ ନୂତନ ସୌନ୍ଦର୍ଯ୍ୟରେ ଜୀବନ୍ୟାସ ଦେଇଛନ୍ତି । ରାଁବେ, ପଲଭେଲେରୀ ମଧ୍ୟ ବଦଲେୟାରଙ୍କ ଏହି ଦର୍ଶନରେ ପ୍ରଭାବିତ ହୋଇ ଯଥାକ୍ରମେ 'ନରକରେ ଏକ ଋତୁ' ଓ 'ଶବ୍ଦର ଇନ୍ଦ୍ରଜାଲ' ମଧ୍ୟରେ ସଙ୍ଗୀତର ସ୍ୱର ଶୁଣିଛନ୍ତି । ଜୀବନ ଯନ୍ତ୍ରଣାକୁ ବଦଲେୟାର ଅତି କରୁଣ ଓ ମର୍ମସ୍ପର୍ଶୀ ରୂପକଳ୍ପ ମାଧ୍ୟମରେ ପ୍ରକାଶ କରିଛନ୍ତି ତାଙ୍କର 'Spleen' କବିତାରେ –

When earth is changed into a humid durgeon
In which Hope, like a bat,
Flits to and fro, beating the walls with its timid wing
And knocking its head against the rotted beams ;

x x x x

Slowly file through my soul ; Hope,
Vanquished, weeps, and fierce, despotic Anguish
Plants his black banner upon my drooping skull.

ଊନବିଂଶ ଶତାବ୍ଦୀର ଏହି ପ୍ରକାର କବିତାର ଭାବଗତ ଆଦର୍ଶ ଓ ଆଙ୍ଗିକରେ ଉଦ୍‌ବୁଦ୍ଧ ହୋଇ, ଧ୍ୱସ୍ତ ବିଧ୍ୱସ୍ତ ଯୁଦ୍ଧୋତ୍ତର କ୍ଷୟିଷ୍ଣୁ ସମାଜର ଅନ୍ତଃସାରଶୂନ୍ୟତାକୁ ନେଇ ଇଲିଅଟ, ଏଜରା ପାଉଣ୍ଡ ଓ ଅଡ଼େନ ପ୍ରଭୃତି ରୂପକଳ୍ପବାଦୀ କବିମାନେ (Imagist poets) ନୂତନ କବିତାମାନ ଲେଖିଲେ । ଲୁଇ ଆରାଗଁ, ପଲ୍ ଏଲୱାର ପ୍ରଭୃତି ଅତିବାସ୍ତବବାଦୀ(Surrealist) କବିମାନେ ଏକ ନୂତନ ଦୃଷ୍ଟିଭଙ୍ଗୀର କବିତାମାନ ଲେଖିଲେ ।

ଟି.ଏସ୍.ଇଲିୟଟଙ୍କ 'Waste Land' କବିତା, ଏଜରା ପାଉଣ୍ଡଙ୍କ ''କାଣ୍ଟୋ'' ବିଂଶ ଶତାବ୍ଦୀର ତୃତୀୟ ଦଶକରେ ଓଡ଼ିଆ ଆଧୁନିକ କବିତାକୁ ପ୍ରଭାବିତ କରିଥିଲା ଏଥିରେ ସନ୍ଦେହ ନାହିଁ । ଏତଦ୍‌ବ୍ୟତୀତ ଇଲିଅଟ୍‌ଙ୍କ 'Prufrock'. 'The Hollow men', 'Ash-wednesday ଏବଂ 'Merina' ଏଜରା ପାଉଣ୍ଡଙ୍କ 'ସାଇନୋ'(Cino)"Dance Figure', Difference of Opinion with Lygdamus'. ଲୁଇ ଆରାଁଗଙ୍କ 'The Lilacs and the Roses' ପଲ୍ ଓଲୱାରଙ୍କ "Scarcelt Disfigured," 'Curfew' ପ୍ରଭୃତି ୟୁରୋପୀୟ କବିତାଗୁଡ଼ିକ ଆଧୁନିକ ଓଡ଼ିଆ କବିତାର ସ୍ୱରରେ ନୂତନ ଝଙ୍କାର ସୃଷ୍ଟି କଲା । ପ୍ରାନ୍ତୀୟ କବି ମଧ୍ୟରେ ରବୀନ୍ଦ୍ର ନାଥଙ୍କ 'ଗୀତାଞ୍ଜଳି', 'ସୋନାର ତରୀ', ଜୀବନାନନ୍ଦ ଦାସଙ୍କ 'ବନଲତା ସେନ୍', 'ଧୂସର ପାଣ୍ଡୁଲିପି', ବିଷ୍ଣୁଦେଙ୍କ 'ଚୋରାବାଲି','ପୂର୍ବଲେଖ' ପ୍ରଭୃତି ବଙ୍ଗଳା କବିତା ମଧ୍ୟ ଆଧୁନିକ ଓଡ଼ିଆ କବିତାକୁ ପ୍ରଭାବିତ କରିଛି ।

ଆଧୁନିକ ଓଡ଼ିଆ କବିତାର ପ୍ରଥମ ବୈପ୍ଳବିକ ପରିବର୍ତ୍ତନ ଦେଖା ଦେଇଥିଲା ବିଂଶ ଶତାବ୍ଦୀର ତୃତୀୟ ଦଶକରେ । ନୂତନ ପ୍ରଗତିବାଦୀ ଚିନ୍ତାଧାରାରେ ପ୍ରଭାବିତ ହୋଇ ସଚ୍ଚି ରାଉତରାୟ କଳ୍ପନା ବିଳାସ ଓ ପାରମ୍ପରିକତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ପ୍ରଗତି ସାହିତ୍ୟ ସୃଷ୍ଟି କରିବାରେ ଆତ୍ମ ନିୟୋଗ କରିଥିଲେ । ୧୯୪୭ ମସିହାରେ ତାଙ୍କର ଆଲୋଡ଼ନକାରୀ କବିତା ବହି 'ପାଣ୍ଡୁଲିପି' ପ୍ରକାଶ ପାଇଥିଲା । ସାମ୍ୟବାଦୀ

ଚିନ୍ତାଧାରା ଓ ନୂତନ ଆଙ୍ଗିକରେ ପରିପୂର୍ଣ୍ଣ 'ପାଣ୍ଡୁଲିପି' ଏକ ଉଜ୍ଜ୍ୱଳ କୃତି । ସଚ୍ଚି ରାଉତରାୟ ନିଜେ ତାଙ୍କ 'ପାଣ୍ଡୁଲିପି'ର ମୁଖବନ୍ଧରେ ଆଧୁନିକ କବିତାର ଆଭିମୁଖ୍ୟ ବିଷୟରେ କହିବାକୁ ଯାଇ ଲେଖିଛନ୍ତି –''ଅତୀତ ବର୍ତ୍ତମାନକୁ ଏକାବେଳକେ ଅସ୍ୱୀକାର ନକରି ଅତୀତର ଜୀବନ ଓ ସମାଜ ବିକାଶର ମୂଳଧାରା ସହିତ ପରିଚିତ ହୋଇ ତାହା ବିଶ୍ଳେଷଣ କରି ଦେଖାଇ ଦେବା, ପୁଣି ନାନା ଆଭ୍ୟନ୍ତରୀଣ ସଂଘର୍ଷ ଓ ସ୍ୱବିରୋଧ ଭିତରେ ଏହି ବିକାଶର ଧାରା କିପରି ଭବିଷ୍ୟତ ଆଡ଼କୁ ଗତି କରୁଛି ତା'ର ସ୍ପଷ୍ଟ ଧାରା ଦେବା ଅଭ୍ୟୁଦୟ ସାହିତ୍ୟର ଧ୍ୟେୟ । ଏହି ଦୃଷ୍ଟିକୋଣରୁ ତାଙ୍କ ମୃତ୍ୟୁଚେତନାରେ ହାହାକାର ନାହିଁ, ଅସନ୍ତୋଷ ନାହିଁ । ମୃତ୍ୟୁ, ମହାକାଳର ଏକ ପ୍ରକ୍ରିୟା : ତେଣୁ ସେ ଗାଇଛନ୍ତି –

**ବିରହର ହାହାକାର**
**ରଜନୀର ପାରାବାର ପାରୁ**
**ଆସେ ସିନା ଭାସି ।**
**କିଏ ତାହା ରୋଧିପାରେ ?**
**କିବା ଲାଭ ଢାଳି ଅଶ୍ରୁରାଶି ?**

(୧୯ପୃଷ୍ଠା–ପାଣ୍ଡୁଲିପି)

ବା

**ରାତିର ସେ ଖାଲି କଳାଛାଇ**
**ସ୍ମୃତିର କଙ୍କାଳ ଖାଲି**
**ଏତେ ମାୟା ତେବେ କାହିଁ ପାଇଁ ?**

(୨୩ ପୃଷ୍ଠା–ପାଣ୍ଡୁଲିପି)

ମୃତ୍ୟୁକୁ ଉପେକ୍ଷା କରି ଜୀବନକୁ ଅଧିକ ପ୍ରଗତିଶୀଳ କରିବାପାଇଁ ସେ ବିପ୍ଳବର ଅଧିକ ଜୟଗାନ କରିଛନ୍ତି । କିନ୍ତୁ ରାଉତରାୟଙ୍କ ପରବର୍ତ୍ତୀ କବିତା 'ସ୍ୱଗତ'ରେ ଏହି ମୃତ୍ୟୁଚେତନା ଆତ୍ମଚେତନାର ନେତିସ୍ୱରରେ ପରିଣତ ହୋଇଛି । ଏକ ଅବ୍ୟକ୍ତ ଶୂନ୍ୟବୋଧରେ ଦଗ୍ଧ ହୋଇଛନ୍ତି 'ଝଡ଼'ର କବି ସଚ୍ଚିରାଉତରାୟ ।

**''ମନେହୁଏ ଏ ଦେହକୁ ସୂକ୍ଷ୍ମ କରି ଅତି**
**ଶୂନ୍ୟ କରି ବୋଧ**
**ଲିଭିଯାନ୍ତି ନିଃଶେଷ ଅବାଧ**
**ଅବା ସମୟରେ ।**
**(ଶୂନ୍ୟରେ ନୁହେଁ, ନୁହେଁ ଆକାଶରେ**
**କାରଣ ଆକାଶ ବି ତ ଚେତନା ।**
**ତାରବି ଅଛି ଗୁଣ ।)**

**ଆଉ ଭୁଲି ଯାନ୍ତି ସବୁ କିଛି ।**
**ଯାହା ଅଛି,**
**ଯାହା ନାହିଁ–ସମ୍ପର୍କ ସମସ୍ତ ।**
**ମୋତେଇ ଆବୃତ କରି ଏକ ଅପର୍ଯ୍ୟାପ୍ତ**
**ନେତିର ପର୍ଯ୍ୟାୟେ ।। (ସ୍ୱଗତ ୨)**

ଏହି ପରିବର୍ତ୍ତିତ ଚେତନା 'ବନଲତା ସେନ'ର କବି ଜୀବନାନନ୍ଦ ଦାସଙ୍କର 'ରୂପସୀ ବାଂଲା' କବିତାରେ ମଧ ଦେଖିବାକୁ ମିଳେ । ଯନ୍ତ୍ରଯୁଗର ଯନ୍ତାରେ ଜୀବନର ଦୁଃସ୍ଥିତିରେ କବିମନ ଅସ୍ଥିର । ତେଣୁ ମୃତ୍ୟୁ କାମନା ତାଙ୍କର ଚରମ ହୋଇଉଠିଛି । ମୃତ୍ୟୁର ଅଭିଜ୍ଞତାକୁ ଶ୍ରେୟସ୍କର ମଣି ମୃତ୍ୟୁର ଗୀତ ଗାଇଛନ୍ତି –

**''ଧାନସିଡ଼ି ନଦୀର କିନାରେ ଆମି ଶୁୟେ ଥାକବ ଧୀରେ,**
**ପଉଷେର ରାତେ**
**କୋନ୍‌ଦିନ ଜାଗବନା**
**କୋନଦିନ ଜାଗବନା ଆମି କୋନଦିନ ଆର ।**

କବି ସଚ୍ଚି ରାଉତରାୟଙ୍କ **ସ୍ୱଗତ** (୨) କବିତାରେ ଯେଉଁ ମୃତ୍ୟୁଚେତନା ପ୍ରକାଶ ପାଇଥିଲା, ତାହା ଏକ ନୂତନ ଦୃଷ୍ଟିଭଙ୍ଗୀରେ ୧୯୬୨ର କବିତା 'ସୀମାନ୍ତ ଟ୍ରେନ୍' କବିତାରେ ଭୟର କାରଣ ନହୋଇ ମୁକ୍ତିର ସୋପାନ ହୋଇ ଦେଖାଦେଇଛି । ତେଣୁ ସେ ଲେଖିଛନ୍ତି –

**ଯାହାକୁ ଏଠାରେ କହୁଁ, ଯାହାକୁ ବା ମଣୁ ଏହିକ୍ଷଣି**
**ସେ ସବୁକୁ କେତେ ଆହା ନ କରିଛି ମୁହିଁ ପ୍ରଦକ୍ଷିଣ**
**ଯା ଗର୍ଭରୁ ଗଢ଼ିଛି ଭୟକୁ, ସମୟକୁ ।**
**କାଳର ଶାଶ୍ୱତ ଗତି ଭାଙ୍ଗିରୁଜି, ରୋକି**
**ରହ ରହ ହେ ନକ୍ଷତ୍ର ଆଉ ଭୟ ! ହେ ସମୟ ।**
**ଆଉ ହେ ଅବର୍ତ୍ତମାନ ।**
**ମୋତେ ଡାକେ ସୀମାନ୍ତର କାଳାନ୍ତର**
**ଅଭୟ ଆହ୍ୱାନ ।''** (ସୀମାନ୍ତ ଟ୍ରେନ୍)

ସଚ୍ଚିରାଉତଙ୍କ **'ଦେହାନ୍ତର'** କବିତାରେ ମୃତ୍ୟୁକୁ ଆହ୍ୱାନ କରାଯାଉଛି, ଅର୍ଥହୀନ ଓ ନିଃସଙ୍ଗ ଜୀବନରୁ ମୁକ୍ତି ପାଇବା ପାଇଁ । କବିଙ୍କ ଦୃଷ୍ଟିରେ– ସବୁ ଖାପଛଡ଼ା, ଅର୍ଥହୀନ ସବୁ ।

**''ଜୀବନଟା ମନେହୁଏ ଏକ କଳା ଓକିଲ ଗାଉନ**
**ଏକ ଘଟାଟୋପ''** । (ଦେହାନ୍ତର)

ତେଣୁ କବି ଗାଇଛନ୍ତି ମୃତ୍ୟୁର ସଙ୍ଗୀତ । ସେ ସଙ୍ଗୀତ ଅତି କରୁଣ-

**"ମୁଁ ଚାହେଁ ଏ ଦେହ ଛାଡ଼ି ଦେବାପାଇଁ ଦୂରନ୍ତ ସାମିଲ**
**ଦେହାତୀତ, ହେବାପାଇଁ ଟିକେ ଅଗ୍ନି, ଏକ ଦିଆସିଲି**
**ଜାଳି ଦେଇପାରେ ଯାହା ରୁଧିରାକ୍ତ ସମସ୍ତ ଦୁନିଆ**
**ପଞ୍ଚଭୂତ ମଧ୍ୟେ ଲୀନ ହୋଇପାରେ ଯଦି ଟିକେ ନିଆଁ**
**ତାହା ହିଁ ତ ଭଲ**
**ମୁଁ ହେବାକୁ ଚାହେଁ ବୈଶ୍ୱାନର, ନୁହେଁ କ୍ଷିତି**
**ମରୁତ ବା ଜଳ ।"**

ସଚ୍ଚିରାଉତରାୟଙ୍କ ମୃତ୍ୟୁଚେତନା-ସମ୍ବଳିତ କବିତାଗୁଡ଼ିକରେ ମୃତ୍ୟୁକୁ କେତେବେଳେ ସେ ସ୍ୱାଗତ କରିଛନ୍ତି, ଜୀବନ ଯନ୍ତ୍ରଣାର ଦହନରୁ ମୁକ୍ତିଲାଭ ପାଇଁ କେତେବେଳେ ଏକ ନୂତନ ଭଗବଦ୍ ଚିନ୍ତା ଓ କେତେବେଳେ ସାମ୍ୟ ମୈତ୍ରୀର ଅନ୍ୱେଷଣରେ ମୁକ୍ତିର ପଥ ହିସାବରେ ମୃତ୍ୟୁକୁ ମଧ ଆହ୍ୱାନ କରିଛନ୍ତି । କିନ୍ତୁ ଏହି ପ୍ରକାର ଚେତନାରେ ଜୀବନର ଦହନ ଓ ତୀବ୍ରତାର ଅଭାବ ଅନୁଭୂତ ହୁଏ ।

କବି ଅନନ୍ତ ପଟ୍ଟନାୟକଙ୍କ ଦୃଷ୍ଟିରେ ମୃତ୍ୟୁ -

**'ମୃତ୍ୟୁ ହେ ! ତୁମେ ଆସିଲେ ସେଦିନ, ମୁଗ୍ଧ ତୁମକୁ ଚାହିଁ**
**ତୁମ ଆଣବିକ ଆଶ୍ଳେଷେ ହଜି ନାଚିଯିବି କଉତୁକେ,**
**ଧୀର ସଂଭ୍ରମେ ପୁଛିବି ଖାଲି ମୁଁ ଭୟ କମ୍ପନ ହେଲି**
**ମୃତ୍ୟୁ କି ତୁମ ଶମଶାନ ନାହିଁ । ରୁଦ୍ରଜୀବନ ବୁକେ ?**

(ଆଲୋଡ଼ାଲୋଡ଼ା - ପୃ : ୬୭)

ବିଶ୍ୱକବି ରବୀନ୍ଦ୍ର ନାଥ ଯେପରି ମୃତ୍ୟୁକୁ ଅମୃତର ସୋପାନ ମଣି ତାକୁ ସ୍ୱୀକାର କରିଥିଲେ ସେହିପରି କବି ଅନନ୍ତ ପଟ୍ଟନାୟକଙ୍କଠାରେ ମୃତ୍ୟୁ ବନ୍ଦନୀୟା । ଏଥିରେ ରହିଛି ପ୍ରେମର ସ୍ନିଗ୍ଧତା ଏବଂ ଏକ ରୋମାଞ୍ଚିତ ଆବେଗ । ରବୀନ୍ଦ୍ରନାଥ ତାଙ୍କ 'ମରନ' କବିତାରେ ଗାଇଛନ୍ତି -

**'ମରଣ୍ୱରେ,**
**ତୁ ହୁଁ ମମ ଶ୍ୟାମ ସମାନ**
**ମେଘବରନ ତୁଚ୍, ମେଘ ଜଟାଜୁଟ**
**ରକ୍ତ କମଲକର, ରକ୍ତ ଅଧର ପୁଟ୍**
**ତାପ ବିମୋଚନ କରୁନ କୋର ତବ**
**ମୃତ୍ୟୁ-ଅମୃତ କରେ ଦାନ**
**ତୁଁ ହୁଁ ମମ ଶ୍ୟାମ ସମାନ ।'**

ଆଧୁନିକ ଓଡ଼ିଆ କବିତାର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୁଏ ୧୯୫୫ ମସିହାରେ ଯେତେବେଳେ ଗୁରୁମହାନ୍ତି ଓ ଭାନୁଜୀରାଓଙ୍କ **'ନୂତନ କବିତା'** ସଂକଳନ ପ୍ରକାଶିତ ହୁଏ । ସମସ୍ତ ପ୍ରକାର ରକ୍ଷଣଶୀଳ ଓ ଶାଶ୍ୱତ ପ୍ରେମର ରୋମାଣ୍ଟିକ୍ ଚେତନାକୁ ବର୍ଜନ କରି ଗୁରୁ ମହାନ୍ତି ସୃଷ୍ଟି କଲେ **'କାଳପୁରୁଷ'** । ଏହି **'କାଳପୁରୁଷ'** କବିତାରେ ଆଧୁନିକ ଯୁଗଯନ୍ତ୍ରଣାର ଓ ଦଗ୍ଧ ନାସ୍ତିକ ମଣିଷର ଜୀବନ୍ମୃତ ଅବସ୍ଥାର ଚିତ୍ରଣ ଦେଖିବାକୁ ମିଳେ । ଜୀବନ ଏକ ଅନ୍ତହୀନ ଅନ୍ଧକାରର ଯନ୍ତ୍ରଣା–ଯାହାକି ମୃତ୍ୟୁ ସହିତ ତୁଳନୀୟ । ତେଣୁ କବି ଗାଇଛନ୍ତି –

**ମୁଁ ଆଜି ତଥାପି ଚାଲେ ପିତୃହନ୍ତା ଆତ୍ମା ମୋର**
**ରୋମ ଆଉ ବେବିଲୋନ ମିଶରର ପ୍ରେତାତ୍ମା ସହିତ,**

('କାଳପୁରୁଷ'– ଗୁରୁ ମହାନ୍ତି)

'ସମୁଦ୍ର ସ୍ନାନ'ର କବି ଗୁରୁ ମହାନ୍ତିଙ୍କ **'କାଳପୁରୁଷ'** କବିତାରେ 'ମୃତ୍ୟୁ ଚେତନା' ମଧ୍ୟରେ ଏଲିୟଟଙ୍କ –'ପୋଡ଼ାଭୂଇଁ ଛାଇ' ଓ ବଦଲେୟାରଙ୍କ ବେଦନା ବିଦଗ୍ଧ କବିତା 'Splun' ବିଷନ୍ନତା ଭାରି ରହିଛି । ରୂପକଳ୍ପ ଓ ଚିତ୍ରକଳ୍ପ ପ୍ରୟୋଗରେ ଏ କବିତା ଏକ ସାର୍ଥକ ସୃଷ୍ଟି । ଏଲିୟଟଙ୍କ ମୃତ୍ୟୁ ଚେତନା ଅନ୍ଧକାରରୁ ଆରମ୍ଭ ହୋଇ ଐଶୀ ଚେତନାରେ ସମାପ୍ତି ଲଭିଛି । କିନ୍ତୁ ଏହି କାଳପୁରୁଷରେ ଏହା ଅନ୍ଧକାରରୁ–ଅନ୍ଧକାରକୁ ଯାତ୍ରା, ଏକ ନିଃସଙ୍ଗଯାତ୍ରା । ଆଧୁନିକ ଓଡ଼ିଆ କବିତାରେ 'ଅନେକ କୋଠରୀ'ର କବି ରମାକାନ୍ତ ରଥଙ୍କ **'ବାଘ ଶିକାର'** ଓ **'ବିମାନ ଦୁର୍ଘଟଣାରେ ମୃତ୍ୟୁ'** କବିତାଗୁଡ଼ିକରେ ମୃତ୍ୟୁଚେତନାର ତୀବ୍ରତା ଓ ଭୟାବହତା ଦେଖିବାକୁ ମିଳେ । ରୂପକଳ୍ପ ଓ ଚିତ୍ରକଳ୍ପ ପରିପୂର୍ଣ୍ଣ ମହାକାଳର ସ୍ରୋତ ମଧ୍ୟରେ ମଣିଷ ଜୀବନର ମୃତ୍ୟୁ ଭୟ ରୂପକ ନିଃସଙ୍ଗତା ଅତୀବ ଜ୍ୱାଳାମୟୀ ଓ ତୀବ୍ର । ଏହି କବିତାଟି ନୂତନ ଚେତନାର ସ୍ୱରଲିପି । ଅମୂର୍ତ୍ତ ଭାବନା ଓ ଏକ ବଳିଷ୍ଠ କାବ୍ୟିକ ଅନୁଭୂତିର ଏକ ଶ୍ରେଷ୍ଠ କୃତି ହେଉଛି ଏହି **'ବାଘ ଶିକାର'** କବିତାଟି । ଏହାକୁ ଏକ ଗୁରୁତ୍ୱପୂର୍ଣ୍ଣ (Serious Poetry) ବା (Metaphysical Poetry) କୁହାଯାଇପାରେ । ଏ ଯୁଗର ମଣିଷର ଚତୁର୍ଦ୍ଦିଗରେ ଅରଣ୍ୟର ଅନ୍ଧକାରର ଏକ ପ୍ରକାର ଶୂନ୍ୟତା–ଅହରହ ଦଗ୍ଧ ହେଉଛି ଏ ଜୀବନ । ତେଣୁ କବିଙ୍କ ଦୃଷ୍ଟିରେ –

**"ମୋ ଜୀବନେ କିଛିନାହିଁ । ଯେଉଁଥିରେ ମୋ**
**ଦାୟିତ୍ୱ ନାହିଁ**
**ମୁଁ ଏକ ଗୋପନ ହାଓ୍ୱା ଜଙ୍ଗଲରେ**
**ଅଦୃଶ୍ୟ ଅନ୍ତରେ"**

କିମ୍ବା

ଯେଉଁମାନେ ଆସିଥିଲେ । ହାକ୍‌କା କରି ଫେରିଯାନ୍ତି
ସେମାନେ ସମସ୍ତେ ।
ସେମାନଙ୍କ ନାକପୁଡ଼ା ଥରୁଅଛି ଭୟରେ ସତେକି
ବାଘ ବଞ୍ଚିଅଛି ଏବଂ ଖିଦ୍‌ଭିକ୍ କରେ ମୋ ତଣ୍ଟିକି
ସତେ ଜୀବନ୍ତ ଫୁଲ ସୁଗନ୍ଧରେ ମୂର୍ଚ୍ଛା ଭାଙ୍ଗେ ମୋର
ଓ ମୁଁ ଦେଖେଁ...ପଡ଼ିଛି ମୋ ନିଜର ମୁର୍ଦ୍ଦାର ।(ବାଘ ଶିକାର)

ମହାକାଳର ମହାଶୂନ୍ୟତାର ଯନ୍ତ୍ରଣା ଅନୁଭବ କରିକରି ପୁଣି ଗାଇଛନ୍ତି-

ମୁଁ କହୁଛି ଝଡ଼ ସାଙ୍ଗେ, ମୁଁ ସାମିଲ ତରଙ୍ଗ ପ୍ରବାହେ
ମୁଁ ନିଜକୁ ଭାଙ୍ଗୁଅଛି, ବସ୍ତୁମାନେ ଯେବେ ଭାଙ୍ଗିଯାନ୍ତି ।
ତଥାପି ମୁଁ ନିଜେ ନୁହେଁ ଯେତେବେଳେ ଚନ୍ଦ୍ର ବୁଡ଼ିଯିବ
ଅନ୍ଧାରର ସମୁଦ୍ରକୁ ଦୁଲୁସାଇ ଫେରିବ ସେ ବାଘ ।

x x x

ବାଘ ମଧ ଦେଖିବନି ମତେ...ଯେଣୁ କେଉଁ ଏକ ଧୂସର ଗ୍ରୀଷ୍ମର
ଲୋକାରଣ୍ୟ ହାସପାତାଳେ, ଶୋଇଥିବି ଅସମର୍ଥ ହୋଇ
ଆଉଥରେ । ପଶିବାକୁ ସେ ଦେହରେ, ଯାହାକୁ ମୁଁ,
ହେ ଯୁବତୀମାନେ
ତମରି ସାଙ୍ଗରେ ଆଜି ଜଙ୍ଗଲରେ ଦେଇଛି ହଜାଇ ।

(ବାଘ ଶିକାର)

ସେହିପରି 'ବିମାନ ଦୁର୍ଘଟଣାରେ ମୃତ୍ୟୁ' କବିତାରେ- ବିମାନ ହେଉଛି 'ଦେହର ପ୍ରତୀକ' ଜୀବନ-ଏଠାରେ ମୃତ୍ୟୁର ଅନ୍ୟ ଏକ ରୂପ । ଏହି ଜୀବନ ଏକ ମହାକାଳର ଛାୟା । ଜୀବନ ଓ ମୃତ୍ୟୁ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ ଜୀବନ ଶୂନ୍ୟମୟ-ମୃତ୍ୟୁମୟ । ଏ ଜୀବନକୁ ଅହରହ ଏକ ଭୟାବହ କରାଳ କେଉଁ ଏକ ସ୍ତ୍ରୀ ମୂର୍ତ୍ତିର ଅଦୃଶ୍ୟ ଅସ୍ତିତ୍ୱ, ତ୍ରସ୍ତ ଓ ଅନ୍ଧକାରମୟ କରୁଛି । କବିଙ୍କ ଭାଷାରେ -

''ଖାଲି, ଖାଲି, ସବୁ ଖାଲି-
କେଉଁ ଏକ କରାଳ ସ୍ତ୍ରୀ ମୂର୍ତ୍ତି
ତା' ଅଦୃଶ୍ୟ ଅସ୍ତିତ୍ୱରେ ତ୍ରସ୍ତ କରେ ବ୍ୟାପ୍ତ ଓ ଅନ୍ଧକାରମୟ
ମରୁଭୂମି ଯାହା ଓଦା କାକରରେ
ପ୍ରତିଧ୍ୱନି ତା'ର ଚିତ୍କାରରେ
ଥଣ୍ଡା ହାଓ୍ୱା ପରି ଶୁଭେ
ଖୁବ୍ ପାଖରେ କେଉଁଠି

**ସମୁଦ୍ର ଢେଉ ଭାଙ୍ଗେ ଏକ ଦିନେ**
**ବିଗତ କାଲିର**
**ରକ୍ତାକ୍ତ ଆକାଶ, ବହୁ ମୃତ ପକ୍ଷୀ**
**ଚକ୍‌କର ଖାଆନ୍ତି**
**ମଝିରେ ମଝିରେ...**
**ପୁତ୍ରଙ୍କ ଶବଭେଳା ପରି**
**ପ୍ରାଣଭୟେ ପଳାତକ ମାଛମାନେ, କାହାକୁ ଖୋଜନ୍ତି ।"**

('ବିମାନ ଦୁର୍ଘଟଣାରେ ମୃତ୍ୟୁ'-ଅନେକ କୋଠରୀ)

ରମାକାନ୍ତ ରଥଙ୍କ ମୃତ୍ୟୁ ଚେତନାର ଅନ୍ୟ ଏକ ବିଶେଷତ୍ୱ ହେଉଛି – ଏହା ସମୟ ଚେତନା (Time Consciousness) ସହିତ ଓତଃପ୍ରୋତ ଭାବେ ଜଡ଼ିତ । ଏହି ସମୟ ଚେତନା ଏଲିୟଟଙ୍କ କବିତା "Ash wednesday 'Prufrock' Rhapsody in a windy night" ଏବଂ 'Marina' କବିତାରେ ଦେଖିବାକୁ ମିଳେ । ଏହି ମହାକାଳର ଚେତନା ଆଧୁନିକ କବିତାକୁ ଆଣି ଦେଇଛି ନୂତନ ସ୍ୱର, ନୂତନଶୈଳୀ ଓ ନୂତନ ଚେତନା ।



# ଆଧୁନିକ କବିତାରେ–ମୃତ୍ୟୁ ଚେତନା

## (୨)

ଏଲିୟଟଙ୍କ କବିତା The Hollow-men ଏବଂ Marina ପ୍ରଭୃତି କବିତାଗୁଡ଼ିକରେ ଜୀବନର ଅନ୍ତଃସାରଶୂନ୍ୟତା ଓ ନିଃସଙ୍ଗତା ପ୍ରକାଶ ପାଇଛି । ବିଂଶ ସଭ୍ୟତାର ସମସ୍ତ ଧର୍ମର ମୂଲ୍ୟବୋଧ ଉପରେ ମନୁଷ୍ୟର ଆସ୍ଥା ରହୁନାହିଁ । ଅସତ୍ୟ ସହର (Unreal City)ର ଜଟିଳ ଜୀବନଧାରାରେ ଆମେ ବଞ୍ଚୁଛୁ । ତେଣୁ ଏଲିୟଟଙ୍କ ଭାଷାରେ ଆମେ ଆଜି –

We are the hollow-men
We are the stuffed-men
Leaning together
Head piece, filled with straw, alas

ଏଇ ପୃଥିବୀର କେବଳ ମୃତ୍ୟୁ ହିଁ ସତ୍ୟ ଯାହାକି ମଣିଷକୁ ମହାକାଳର ଛାୟା ରୂପେ ଗ୍ରାସ କରିଛି । ତେଣୁ ଏଲିୟଟ ଗାଇଛନ୍ତି ଜୀବନର ମୃତ୍ୟୁ ସଙ୍ଗୀତ –

This is the dead land
This is the cactus land
Here the stone images
are raised, here they receive
the supplication of a dead man's hand
Under the twinkle of a fading star
Is it like this
In death'w other Kingdom
Walking alone. (The Hollow-men)

ଏଲିୟଟଙ୍କ ମୃତ୍ୟୁଚେତନା ତାଙ୍କର "ମେରିନା" କବିତାରେ ଅତି ମର୍ମସ୍ପର୍ଶୀ ଭାବରେ ପ୍ରକାଶିତ । ଏହି କବିତାରେ ସେ ମୃତ୍ୟୁକୁ ବରଣ କରିଛନ୍ତି ସମୁଦ୍ରର ଅତଳ ଗହ୍ବର ନୀରବତା ଓ ପ୍ରଶାନ୍ତି ମଧ୍ୟରେ ।

What seas what shores, what grey rocks
and what islands
what water lapping the bow
and scent of pine and the wood,
the rush singing through the fog
what images return
O my daughter
Those who sarpen the tooth
of the dog meaning death

(T.S.Elliot, Marina)

ଆଧୁନିକ ଓଡ଼ିଆ କବିତାରେ ଏଲିୟଟଙ୍କ ମୃତ୍ୟୁ ଚେତନାର ଗଭୀର ପ୍ରଭାବ ଦେଖାଯାଏ । କବି ରମାକାନ୍ତ ରଥଙ୍କ କବିତା – **"ବାଘ ଶିକାର"**, **"ବିମାନ ଦୁର୍ଘଟଣାରେ ମୃତ୍ୟୁ"**ରେ ଦେଖିବାକୁ ମିଳେ ଏଲିୟଟଙ୍କ **"କାଳଚେତନା"**, **"ମୃତ୍ୟୁଚେତନା"**ର ଦଗ୍‌ଧତା ଅତିକ୍ରମ କରି ତାଙ୍କର "Chorus from the Rock" କବିତାରେ ତାଙ୍କ ମୃତ୍ୟୁ ଚେତନା ଦିବ୍ୟ ଚେତନାରେ ରୂପାନ୍ତରିତ ହୋଇଛି । ତେଣୁ ଏଲିୟଟଙ୍କ କବିତାରେ ଶୁଣାଯାଇଛି –

"So the darkness shall be right
and the stillness, the dancing."

କିନ୍ତୁ ରମାକାନ୍ତ ରଥଙ୍କ ମୃତ୍ୟୁ–ଚେତନା ସବୁବେଳେ ଆତ୍ମ–ଚେତନାରେ ଏକ ଉଦଗ୍ର ନେତିସ୍ୱରର ଭାବ ପରିଲକ୍ଷିତ ହୁଏ । ଯଥା –

**"ସେ ବସିବ ଅନ୍ଧାରରେ ଦିନେ ତା'ର**
**ଏକୁଟିଆ ମାଟି ବାରଣ୍ଡାରେ**
**ବାଘ ଛାଲ ଯେପରି ସଜାଯାଏ**
**ବାଘ ପରି ବୈଠକଖାନାରେ ।"**

ରମାକାନ୍ତ ରଥଙ୍କ ପରେ କବି ସୀତାକାନ୍ତ ମହାପାତ୍ରଙ୍କ **"ଅଷ୍ଟପଦୀ"** କବିତା ସଂକଳନରେ ଥିବା "ମାଟି ଓ ମଣିଷ", "ମୃତ୍ୟୁ ନାଚ", 'ତ୍ରିଶଙ୍କୁର ମଧ୍ୟସ୍ୱର୍ଗ", "ମରୁପଥର ସ୍ୱରଲିପି", "ରକ୍ତନଦୀର ସନ୍ତରଣ ପରେ" ପ୍ରଭୃତି କବିତାଗୁଡ଼ିକରେ

ଆଧୁନିକ ମୃତ୍ୟୁ ଚେତନାର ପରିପୂର୍ଣ୍ଣ ସଫଳ ଚିତ୍ରଣ ଦେଖାଯାଏ । ସୀତାକାନ୍ତଙ୍କ ଭାଷାରେ ଏ ଚେତନା ଏ ପ୍ରକାର ଜୀବନ ଜିଜ୍ଞାସା ଆଧୁନିକ ମଣିଷ ମନର ଏକ ଦୂରନ୍ତ ''ବ୍ୟାକୁଳତା'' ସେ ମୁଖଶାଳା ଲିପିରେ ଲେଖିଛନ୍ତି, ''ଆଧୁନିକ କବିତା ଏକ ଅନ୍ତଃର୍ଦ୍ୱନ୍ଦ୍ୱ ଏକ ଜଟିଳ ମାନସ ଏକ ସୁଦୂର ପ୍ରସାରୀ ବ୍ୟାପ୍ତି ଏକ ସଫଳ ଦିଗନିର୍ଣ୍ଣୟ ପାଇଁ ମଣିଷ ମନର ଆଦିମ ପ୍ରକୃତି । ଏକ ମହାନ ସହାନୁଭୂତି ସମ୍ପନ୍ନ ଅନୁଭବୀ ହୃଦୟ ଯାହାସବୁ ଗ୍ରହଣ କରେ । ଆଧୁନିକ କବିତା ଏକ ପରିପ୍ରେକ୍ଷୀ ନୁହେଁ, ଏହା ଗୋଟିଏ ମୌଳିକ ମାନସିକ ବିପ୍ଳବ, ଏହା ଛଳନା ନୁହେଁ, ଏହା ଗୋଟିଏ ବ୍ୟାକୁଳତା ।''

''ମାଟି ଓ ମଣିଷ''ର ସୀତାକାନ୍ତଙ୍କ ମୃତ୍ୟୁ-ଚେତନାର ନାୟକ ହେଉଛି ବାସୁଦେବ, ଯେ କି ସମୟ, ଇତିହାସ, ଦେବତାର ଧ୍ୱଂସ ମଧ୍ୟରେ ନୂତନ ଜୀବନର ମୁକ୍ତି ପାଇଁ ବନ୍ଦୀଶାଳାରେ ଦେବକୀଙ୍କ ଅଷ୍ଟମ ଗର୍ଭର ନବଜାତକର ଆବିର୍ଭାବ ପାଇଁ ତଥାପି ଆଶାନ୍ୱିତ । ବସୁଦେବ ଜୀବନରେ ମୃତ୍ୟୁ ଉପଲବ୍ଧି କରିଛନ୍ତି ବନ୍ଦୀଶାଳାର ନିରନ୍ଧ୍ର ଅନ୍ଧକାର ମଧ୍ୟରେ ଭୟ ଓ ମହାକାଳର ଶବପୋଡ଼ା ଯନ୍ତ୍ରଣାରେ ଦଗ୍ଧ ହୋଇ । ଏହି ମୃତ୍ୟୁ ଚେତନାର ବର୍ଣ୍ଣାଢ୍ୟ ଅଭିବ୍ୟକ୍ତି ଦେଖାଯାଇଛି ''ମାଟି ମଣିଷ'' କବିତାରେ -

**''ଆକାଶେ ଶାଗୁଣା ଦଳ କୁତ୍ସିତ ବିରୂପ**
**ଡେଣା ତା'ର ଢାକୁଥିଲା ଚନ୍ଦ୍ର ଆଉ ଆକାଶର ନୀଳ**
**ନିସ୍ତବ୍ଧ ରାତି ଶାଗୁଣାର ଡେଣା ଫଡ଼ଫଡ଼**
**ଥିଲା ବେଶ୍ ଭୟଙ୍କର, ବିକୃତ, ନିଗୁଢ଼ ।''**(ଅଷ୍ଟପଦୀ)

**ସେଦିନ ସେମାନେ ସବୁ ପୋଡୁଥିଲେ ମହାକାଳ ଶବ**
**ବିଦଗ୍ଧ ବିମୋନ ଏକ ଶରତର ରାତି ପାହାନ୍ତାରେ ।**

ମୃତ୍ୟୁର ନାୟକ ଏହି କବିତାରେ ସାତଟି ସ୍ୱପ୍ନ ଦେଖୁଛି । ଏହି ସାତଟି ସ୍ୱପ୍ନ ମଧ୍ୟରେ ଚତୁର୍ଥ ସ୍ୱପ୍ନ ହେଉଛି ମୃତ୍ୟୁ-ଚେତନାର ସ୍ୱପ୍ନ ,ଯାହା ଅତି ତୀବ୍ର ଓ ମର୍ମସ୍ପର୍ଶୀ । ପ୍ରଥମ ସ୍ୱପ୍ନରେ ନାରୀର ଆକର୍ଷଣ । ଶହଶହ ଶହେଶହ ଯୁବତୀ ଓ ନାରୀ ହରଗୌରୀଫୁଲ ଓ ମଞ୍ଜୁଆତି ନଖରେ ରକ୍ତିମସ୍ତନ ଆଉ ଜାନୁ ଦେଶେ ମକରୀ ଭ୍ରମରୀ ଚିତ୍ରଣ ମଧ୍ୟରେ ଆରମ୍ଭ ହୋଇ ଶେଷ ହୋଇଛି ଏକ ଭୟଙ୍କର ରୂପକଳ୍ପ ମାଧ୍ୟମରେ -

**ଦେଖିଲି ସେ ନାରୀ ନୁହେଁ**
**ଦାନ୍ତ କଡ଼ମଡ଼ କରି ସିଏ ଗୋଟେ**
**କଳା ଆଉ ଭୁଷୁଣ୍ଡା ମାଙ୍କଡ଼**
**ଜାବୁଡ଼ି ଧରିଲା ମୋତେ ଦି' ହାତରେ**
**ତୀକ୍ଷ୍ଣ ନଖେ ବିଦାରିଲା ମୁହଁ ମୋର, ମୁଁ କଲି ଚିତ୍କାର**

**ହଠାତ୍ ନିଦରୁ ଉଠି ଦେଖେ ମୁଁ, ନିଦ୍ରିତା ତୁହି**
**ଶୂନ୍ୟ ସେହି ବନ୍ଦୀଶାଳ, ଅନ୍ଧାର ଓ ନିରନ୍ଧ୍ର ଅନ୍ଧାର ।**

(ଅଷ୍ଟପଦୀ-ପୃ : ୩୫)

ଦ୍ୱିତୀୟ ସ୍ୱପ୍ନ ଏକ ଚନ୍ଦ୍ର ଅନୁଭୂତି-
**ତଳେ ନାହିଁ ମୁଁ ଦେଖିଲେ ସଂଦିପ୍ତ ଅଗ୍ନି ଦିଶୁଅଛି**
**ମାଳମାଳ ମୟୂରୀର ବେକ ।**

ତୃତୀୟ ସ୍ୱପ୍ନରେ ନାୟକ ଦେଖୁଛି ନିଜ ଦେହରେ ମୁଣ୍ଡ ନାହିଁ ଏବଂ ତା' ପରବର୍ତ୍ତୀ ଚତୁର୍ଥ ସ୍ୱପ୍ନରେ ନାୟକ ମୃତ୍ୟୁର ହିଁ ସ୍ୱପ୍ନ ଦେଖୁଛି । ଭୟପ୍ରଦ ମହାକାୟ କୃଷ୍ଣଦନ୍ତ ପରି ଏହି କବିତାରେ ଦାରୁଣ ଶୂକର ରୂପରେ ମୃତ୍ୟୁର ପ୍ରତୀକ ହୋଇ ଠିଆ ହୋଇଛନ୍ତି । ତେଣୁ ନାୟକ ବସୁଦେବ ମୃତ୍ୟୁର ମୁହାଁମୁହିଁ ହୋଇ ଗାଇଛନ୍ତି ଏକ ମର୍ମସ୍ପର୍ଶୀ କରୁଣ ଗୀତ –

**''ଗୋଧୂଳିର ମୃତ ଛାଇ ତଳେ**
**ବୁଲି ଯାଉଁଯାଉଁ ପଥେ ହଠାତ୍ ହାବୁଡ଼ି ଗଲା**
**ଭୟପ୍ରଦ ମହାକାୟ କୃଷ୍ଣଦନ୍ତ ଦାରୁଣ ଶୂକର**
**ତୋ ଚିତ୍କାର ପଡୁଅଛି ମୋ'କାନରେ**
**ଶୂକରର ଆକ୍ରମଣେ ମୁଁ ପାଇଛି ମୃତ୍ୟୁର ଦୁଆର ।''**

(ଅଷ୍ଟପଦୀ – ପୃ ୩୫)

ପଞ୍ଚମ ସ୍ୱପ୍ନ ଏକ ମୃତ୍ୟୁଯାତ୍ରାର ସ୍ୱପ୍ନ ନିରବରେ ଏକାକୀ ଭୀତତ୍ରସ୍ତ ପାଦ ଥାପିଥାପି ମହାକାଳ ଆଡ଼କୁ ଯାତ୍ରା, ଷଷ୍ଠସ୍ୱପ୍ନରେ ନିଜେ ନାୟକ ମୃତ୍ୟୁଚେତନାରେ ଦଗ୍ଧ ହୋଇ ନିଜେ ମୃତ୍ୟୁ ପାଲଟିଛି ଏବଂ ଯାତ୍ରା ଏକ ଭୟଙ୍କର ମହାକାଳରଯାତ୍ରା । ତେଣୁ ନାୟକ ନିଜେ ଗାଉଛି –

**ମୁଁ ଯାଉଛି ବଣକୁ ସେ ଏକ ମହିଷି ପିଠିରେ**
**ଜରାୟୁର ବଦ୍ଧ ରକ୍ତ, ତୋ ମଥା ସିନ୍ଦୁର ପରି**
**ମୋର ଗଳାରେ ରକ୍ତ ପୁଷ୍ପମାଳ**
**ଆକାଶର ଶେତା ମୁହେଁ ହଠାତ୍ ଉଠିଛି ଝଲି**
**ପରିବ୍ୟାପ୍ତ ରକ୍ତିମ ଦୁଆର ।** (ଅଷ୍ଟପଦୀ – ପୃ : ୩୫)

ସପ୍ତମ ସ୍ୱପ୍ନରେ ନାୟକର ଆତ୍ମଚେତନାରେ ମୃତ୍ୟୁ ଚେତନା ପରିବ୍ୟାପ୍ତ ହୋଇଯାଇଛି । ନାୟକ ବସୁଦେବ ଅନୁଭବ କରିଛନ୍ତି ମୃତ୍ୟୁ ହାତରୁ ମୁକ୍ତି ନାହିଁ । ଏ ଜଗତ ମୃତ୍ୟୁମୟ ହୋଇଉଠିଛି । ନିଜେ ସେ ମୃତ୍ୟୁର କାରଣ, ତେଣୁ ସେ ଅନୁଭବ କରୁଛି ଓ ଗାଉଛି –

**ରକ୍ତ ଛିଟିକା ମୋ ଅଙ୍ଗେ ହାତେ ମୋର ଝଲସିତ କ୍ଷୁରୀ**
**ନିଦ୍ରା ଶେଷେ ପୁଣି ସେହି କାରାଗାର ଅନ୍ଧାର ଶତେକ ପ୍ରହରୀ ।**

(ଅଷ୍ଟପଦୀ-ପୃ : ୩୬)

ମାଟି ଓ ମଣିଷ ଦୀର୍ଘ କବିତାର ପଞ୍ଚମ ବିଭାଗ ପ୍ରତିଧ୍ୱନିରେ ନାୟକ ମୃତ୍ୟୁର ସ୍ଥିତିକୁ ସ୍ୱୀକାର କରିନେଇଛି ତଥାପି ସେ ମୃତ୍ୟୁ ଚେତନାର ଅନ୍ତରାଳରୁ ତା'ର ପ୍ରେତାତ୍ମା ତାକୁ ଖୋଜିଅଛି । ନାୟକ ତା'ର ସ୍ଥିତି ସନ୍ଧାନରେ ଅତୀବ ବ୍ୟାକୁଳ । ଏହି ବିକଳତାହିଁ ଆଧୁନିକ ବିଂଶ ଯୁଗର ମଣିଷ ମନର ବ୍ୟାକୁଳତା ଏହା ହିଁ ଆଧୁନିକତା । ସୀତାକାନ୍ତ ମହାପାତ୍ରଙ୍କ କବିତାରେ ଏହି ଆଧୁନିକତାର ସ୍ୱର ଯାହାର ଦିଗନ୍ତବିସ୍ତାରୀ ମୃତ୍ୟୁଚେତନା ମୃତ୍ୟୁ ବିଜୟୀ ହେବାର ସମ୍ଭାବନାକୁ ଉଜ୍ଜ୍ୱଳ କରିଦିଏ ।

ଆତ୍ମବିଶ୍ଳେଷଣ ଅବଚେତନର ମନର କ୍ରିୟା ଟିକିନିଖି ବର୍ଣ୍ଣନା ସର୍ବୋପରି ବିଭିନ୍ନ ପୌରାଣିକ ରୂପକ ମାଧ୍ୟମରେ ଯୁଗ ଯନ୍ତ୍ରଣା, ଜୀବନର ବନ୍ଧ୍ୟତ୍ୱ ଅର୍ଥହୀନ ସ୍ଥିତି ଜୀବନ ଚେତନା ମଧ୍ୟରେ ମୁକ୍ତି ପାଇଁ ବ୍ୟାକୁଳତା 'ମାଟି ଓ ମଣିଷ' କବିତାର ଏଲିୟଟଙ୍କ ସମୟ ଚେତନା, ସାର୍ତ୍ରେଙ୍କ ସ୍ଥିତିବାଦୀ ଦର୍ଶନର ବୌଦ୍ଧିକ ଦୀପ୍ତି -(man is useless passion) ଓ ଡିଲାନ୍ ଥୋମାସଙ୍କ ମୁଖ୍ୟ କଳ୍ପନା ଏବଂ ଭାରତୀୟ ପ୍ରାଚୀନ ପୌରାଣିକ ରୂପ କଳ୍ପରେ ରସୋତୀର୍ଣ୍ଣ ହୋଇଛି । ପ୍ରାଚୀନ ଓ ଆଧୁନିକ ଚେତନାର ଏକ ସୁନ୍ଦର ସମନ୍ୱୟ ଏହି କବିତାରେ ପରିପୂର୍ଣ୍ଣତା ଲାଭ କରିଛି । ଏଲିୟଟଙ୍କ କବିତା Prufrockରେ ଥିବା I have measured out of li fe with cofee spoon, I know the voices dying with a dying fall କବିତାର ନିଃସଙ୍ଗତାର ଧ୍ୱନି, ସାର୍ତ୍ରେଙ୍କ - 'Being and nothingness'ର (ausea) ଏବଂ (Bad faith)ର ଚିତ୍ରଣ ଏବଂ ଡିଲାନ ଥୋମାସ୍‌ଙ୍କ ସେଇ ମୃତ୍ୟୁ ଚେତନା ସମ୍ବଳିତ କବିତା (over, Sir John's Hill) ନୀରୀଶ୍ୱର ଚିନ୍ତାଧାରାର ବେଦନାପ୍ଳୁତ, ଗୀତି ମର୍ମର ଧ୍ୱନି, ଏହି 'ମାଟି ଓ ମଣିଷ' କବିତାରେ ରସୋତ୍ତୀର୍ଣ୍ଣ ହୋଇ ଉଠିଛି । ଏହି ଗୀତି ହେଉଛି 'ଜୀବନ-ମୃତ'(death in life) ଅବସ୍ଥାର କରୁଣ ଗୀତି - କୋଡ଼ିଏଟି ଯୁଗର ମୁକ୍ତି, ପତନ ଓ ମୃତ୍ୟୁ ଚେତନାର ବିଦଗ୍ଧ ମଣିଷର ନିଃସଙ୍ଗ ଗୀତି ।

ଅଷ୍ଟପଦୀର ଅନ୍ୟାନ୍ୟ କବିତା ଯଥା - "**ମୃତ୍ୟୁ ନାଚ**" ସ୍ତନଦ୍ୱୟର ଉପକଥା, "**ତ୍ରିଶଙ୍କୁର ମଧ୍ୟସ୍ୱର୍ଗରେ** ମଧ ମୃତ୍ୟୁଚେତନା ପ୍ରକାଶିତ ବିଂଶ ଯୁଗର ଅର୍ଥହୀନ ଜୀବନର ନିଃସଙ୍ଗତାରେ ପରିପୂର୍ଣ୍ଣ ମୃତ୍ୟୁଭୟ ଏବଂ ସର୍ବୋପରି ସେହି ମୃତ୍ୟୁ ଭୟକୁ ଅତିକ୍ରମ କରିବାର ବ୍ୟାକୁଳତା ହିଁ ପ୍ରକାଶ ପାଇଛି ମହାପାତ୍ରଙ୍କ ଅନ୍ୟ ଏକ ସାର୍ଥକ କବିତା'**କୁବୁଜା ପାଇଁ ଗୋଟାଏ ସଙ୍ଗୀତ**' ମଧ୍ୟରେ । ପୁଣି ତାଙ୍କର ସୋଲନ୍ କବିତାରେ ଆତ୍ମ ନିର୍ବାସନରୁ ମୁକ୍ତିପାଇଁ ଏକ ବ୍ୟାକୁଳତା ପ୍ରକାଶ ପାଇଛି । "କୁବୁଜା ପାଇଁ ଗୋଟାଏ ସଙ୍ଗୀତ'ରେ

ମୃତ୍ୟୁ ଚେତନାର ନେତି ସ୍ୱର କ୍ରମେକ୍ରମେ ରୂପାନ୍ତରିତ ହୋଇଛି, ଆତ୍ମ ନିର୍ବାସନରୁ ମୁକ୍ତିର ବ୍ୟାକୁଳତାରେ-କୁହୁଙ୍କା ପ୍ରାର୍ଥନା କରୁଛି -

**ହେ ପରମ ଆଦିମୂଳ**
**ଆଜି ତେଣୁ ମୁକ୍ତି ମାଗେ**
**ଅଭିଶପ୍ତ ମଥୁରାର ବନ୍ଦୀ ନଗ୍ନଲୋକେ**
**ତୋର ଚରଣ ରେଣୁ ସ୍ପର୍ଶେ**
**ଝରିଯାଉ ଜୀବନର ଅସାର ନିର୍ମୋକ**
**ଶେଷ ହେଉ ଧୂସରର ସୁଖ ଆଉ ବିଭଙ୍ଗ କାଳର ।**

(ଅଷ୍ଟପଦୀ-ପୃ : ୧୦)

ଆଧୁନିକ ଓଡ଼ିଆ କବିତାର ଅନ୍ୟ ଏକ ବିଶିଷ୍ଟ କବି ଶ୍ରୀ ଦୀପକ ମିଶ୍ରଙ୍କର କବିତାରେ ଏହି ମୃତ୍ୟୁଚେତନାର ସ୍ପଷ୍ଟ ଅଭିବ୍ୟକ୍ତି ଦେଖିବାକୁ ମିଳେ ତାଙ୍କର 'ନିର୍ଜନ ନକ୍ଷେତ୍ର' କବିତାରେ । ସେ ଗାଇଛନ୍ତି -

**ମୃତ୍ୟୁକୁ ମୁଁ ଅନୁଭବ କରେ**
**କଳାକଳା ଢେଉଭଳି ଜନ ଗହଳିରେ**
**ମୃତ୍ୟୁକୁ ମୁଁ ସ୍ପର୍ଶ କରେ**
**ମୋ ନିଜ ସନ୍ତାନର ନରମ ଅଙ୍ଗୁଳିରେ**
**ତୁଳା ଅଂଶ ପରି**
**ମୃତ୍ୟୁକୁ ମୁଁ ଭୟ କରେ**
**କେଉଁ ଉଲଗ୍ନ ଅନ୍ଧାରର ବୁଜିବାର ପରିଶ୍ରମ ଭଳି**
**ମୃତ୍ୟୁକୁ ମୁଁ ପ୍ରେମ କରେ**
**ପ୍ରତିଦିନ ନୂଆ ସ୍ତ୍ରୀମାନଙ୍କୁ ପ୍ରେମ କରିବାର ନିଶା**
**ଆଉ ନିରର୍ଥକ ସ୍ୱପ୍ନପରି । (ନିର୍ଜନ ନକ୍ଷେତ୍ର)**

ଶ୍ରୀ ମିଶ୍ରଙ୍କ କବିତା ଯୁଗ ଯନ୍ତ୍ରଣା ଅପେକ୍ଷା ଆତ୍ମ ଯନ୍ତ୍ରଣା ପ୍ରେମ ବିରହର ସ୍ମୃତି ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ - ଉଦ୍ଦିଷ୍ଟ ହେଲା ପରି ମନେହୁଏ । ତାଙ୍କ ଦୃଷ୍ଟିରେ ମୃତ୍ୟୁର ବିଭିନ୍ନ ସ୍ୱରୂପ ରହିଛି । କେତେବେଳେ ସେ ମୃତ୍ୟୁକୁ ଭୟ କରନ୍ତି, କେତେବେଳେ ସେ ପ୍ରେମ କରନ୍ତି, କେତେବେଳେ ତାକୁ ଆହ୍ୱାନ କରନ୍ତି ।

କବି ଦୀପକ ମିଶ୍ରଙ୍କ ବ୍ୟତୀତ ଆଧୁନିକ କେତେକ ତରୁଣ କବିଙ୍କ ମଧ୍ୟରେ ମୃତ୍ୟୁଚେତନାର ସାର୍ଥକ ଉତ୍ତରଣ ହୋଇଛି । ସେମାନଙ୍କ ମଧ୍ୟରେ କବି ସୌଭାଗ୍ୟ ମିଶ୍ର, ବେଣୁଧର ରାଉତ, ପ୍ରହରାଜ ସତ୍ୟନାରାୟଣ ନନ୍ଦ ଏବଂ ହରପ୍ରସାଦ ଦାସ, ସରୋଜ ରଞ୍ଜନ ମହାନ୍ତି ଅନ୍ୟତମ । ଏମାନଙ୍କ କବିତାରେ ଆତ୍ମ ଯନ୍ତ୍ରଣା, ଆତ୍ମ ଅନ୍ୱେଷା

ଓ ସର୍ବୋପରି ଯୁଗ ଯନ୍ତ୍ରଣାର ପ୍ରଚ୍ଛନ୍ନ ସ୍ୱର ପରିଲକ୍ଷିତ ହୁଏ । ଏମାନଙ୍କ ମଧ୍ୟରେ ଏହି ଆଧୁନିକ ମୃତ୍ୟୁଚେତନାର ବିକାଶ କ୍ଷେତ୍ରରେ ବଳିଷ୍ଠ ସମ୍ଭାବନା ରହିଛି ।

ଆଧୁନିକ କବିତାର ମୃତ୍ୟୁ ଚେତନା ଚିତ୍ରଣର ସାର୍ଥକତା ହେଉଛି ଯେ ଏ ପ୍ରକାର ଚେତନା ପ୍ରତ୍ୟେକ ମଣିଷକୁ ଆତ୍ମ ଅନ୍ୱେଷଣ ମଧ୍ୟରେ ବାଟ କଢ଼ାଇ ଜୀବନର ନୀରନ୍ଧ୍ର ଅନ୍ଧକାର ରାସ୍ତାରେ ସତ୍ୟର ଆଲୋକ ଆଡ଼କୁ ନେଇଯାଏ । ନଚିକେତା ମୃତ୍ୟୁ ଦେବତାଙ୍କ ପାଖରୁ ଆତ୍ମଜ୍ଞାନ ଲାଭ କଲାପରି ଆଧୁନିକ କବି ଯୁଗ ଯନ୍ତ୍ରଣାର ମୃତ୍ୟୁଚେତନା ମଧ୍ୟରେ ମୁକ୍ତିର ସଙ୍ଗୀତ ଗାଇଛନ୍ତି । ଯୁଗଯୁଗ ମୁକ୍ତିକାମୀ ମଣିଷର ଅଶ୍ରୁକୁ ଲିପିବଦ୍ଧ କରିଛନ୍ତି । ତେଣୁ ଏ ପ୍ରକାର ଚେତନା ବାସ୍ତବଧର୍ମୀ ବୋଲି କୁହାଯାଇପାରେ ।

ଏହି ଆତ୍ମଦଗ୍ଧତାର ଚେତନା ଅନେକ ସମୟରେ ମଣିଷକୁ ଅତି ବିଷାଦବାଦୀ କରି ପକାଏ ସତ କିନ୍ତୁ ଯନ୍ତ୍ରଣା ଦଗ୍ଧ ଯୁଗ ଯୁଗର ମଣିଷର ନିଃସଙ୍ଗତାକୁ ଏବଂ ତା'ର ଅବଚେତନ ଓ ଚେତନ ମନର ମୁକ୍ତିର ବ୍ୟାକୁଳତାକୁ ଅତି ମର୍ମସ୍ପର୍ଶୀ ଭାବରେ ପ୍ରକାଶ କରିପାରେ । ଏହାଦ୍ୱାରା ଏକ ସୁପ୍ତ ଶକ୍ତିର ସୌନ୍ଦର୍ଯ୍ୟ ଅନୁଭୂତ ହୋଇପାରେ । Suffering is the beauty ରବୀନ୍ଦ୍ର ନାଥଙ୍କର ଏହି ଉକ୍ତିର ସାର୍ଥକତା ଏହି ମୃତ୍ୟୁ-ଚେତନା ସମ୍ବଳିତ କବିତା ମଧ୍ୟରେ ଅନୁଭୂତ ହୁଏ । ମଣିଷର ନିଃସଙ୍ଗ ଆତ୍ମା ଏହି ଚେତନା ମଧ୍ୟରେ ନିଜର ପରିଚୟ Identity ଖୋଜି ପାଏ । ପ୍ରଖ୍ୟାତ ସମାଲୋଚକ କଲିନ୍ ଉଇଲ୍ସନ୍ ତାଙ୍କର The outsider ପୁସ୍ତକରେ ଲେଖିଛନ୍ତି ମୃତ୍ୟୁ ଚେତନାର ମୁହାଁମୁହିଁ ହୋଇପାରିଲେ ମଣିଷ ଏକ ''ନୂତନ ଶକ୍ତି'ର ଅଧିକାରୀ ହୋଇପାରେ ଏବଂ ସେ ଶକ୍ତି ଜୀବନ ଚେତନା ଆଣିଦିଏ । ସେ ଏହାର ଏକ ଉଦାହରଣ ଦେଇ ଲେଖିଛନ୍ତି ଯେ, ରାମକୃଷ୍ଣ ପରମହଂସ, ଔପନ୍ୟାସିକ ଗ୍ରାହମ ଗ୍ରୀନ୍ ପ୍ରତ୍ୟେକ ଆତ୍ମହତ୍ୟାର ମୁହୂର୍ତ୍ତ ମଧ୍ୟରେ ଏକ ଦିବ୍ୟ ଜୀବନ ଚେତନାକୁ ଅନୁଭବ କରିପାରିଲେ । କଲିନ୍ ଉଇଲ୍ସନ୍ ପୁଣି ଲେଖିଛନ୍ତି –

And sartre was getting to the same thing when he said that he had never felt so free as under constant threat of death in the German Occupation. (Colin Wilson, The outsider)

ଅନେକ ଆଧୁନିକ କବିତା ଆଲୋଚନା କଲେ ଜଣାପଡ଼େ ମୃତ୍ୟୁ-ଚେତନା ସମ୍ବଳିତ କବିତାଗୁଡ଼ିକ ପାଠକକୁ ସତ୍ୟ ସନ୍ଧିତ୍ସୁ କରେ । କେତେକ ଆଧୁନିକ କବି ମୃତ୍ୟୁ-ଚେତନାର ଉଗ୍ର ନେତିବାଦରୁ ଆରମ୍ଭ କରି କେତେବେଳେ ପ୍ରଗତିବାଦ ଓ କେତେବେଳେ ଆଧ୍ୟାତ୍ମିକବାଦ୍ ମଧ୍ୟରେ କବିତାର ବକ୍ତବ୍ୟ ଶେଷ କରିଅଛନ୍ତି । ଯେପରି ପ୍ରଥମ ମହାଯୁଦ୍ଧ ଧ୍ୱସ୍ତବିଧ୍ୱସ୍ତ ସମାଜର ଦୃଶ୍ୟରେ ଏଲିୟଟଙ୍କ କବିତା ନୈର୍ବ୍ୟକ୍ତିତା ମଧ୍ୟରେ ହୋଇ ଶେଷରେ ମୁକ୍ତି ସନ୍ଧାନ ପାଇଛି ତାଙ୍କର Four quarters କବିତା ଗୁଚ୍ଛରେ । କେଥଲିକ୍ ଧର୍ମର ଆଧ୍ୟାତ୍ମିକତା ମଧ୍ୟରେ ସେ ଶାନ୍ତିର ସନ୍ଧାନ ପାଇଲେ ।

ସେହିପରି ଆଧୁନିକ ବଙ୍ଗଳା କବିତାରେ କବି ବିଷ୍ଣୁ ଦେ ନେତିବାଦରୁ ଆରମ୍ଭ କରି ଶେଷରେ ପ୍ରଗତିବାଦରେ ଆସ୍ଥା ସ୍ଥାପନ କରିଛନ୍ତି । ତାଙ୍କର ଚେନା ବିଶ୍ୱଚେତନା ସହିତ ଏକୀଭୂତ ହୋଇଯାଇଛି ତାଙ୍କର 'ପଞ୍ଚ ପ୍ରହର' କବିତାରେ ।

ସେହିପରି କବି ସୀତାକାନ୍ତ ମହାପାତ୍ରଙ୍କର ମୃତ୍ୟୁ ଚେତନା ଆତ୍ମ-ନିଃସଙ୍ଗତା ମଧ୍ୟରେ ମୁକ୍ତିର ବ୍ୟାକୁଳତା ପ୍ରକାଶ ପାଇଛି, **କୁବୁଜା ପାଇଁ** ଗୋଟିଏ ସଙ୍ଗୀତରେ ଏକ ଗଭୀର ଆଧାତ୍ମିକ ଅନୁଭୂତି ମଧ୍ୟରେ କିମ୍ବା **'ସୋଲେନ'** କବିତାର ଏକ ଗଭୀର ଏକାତ୍ମବୋଧ ଭାବରେ ତନ୍ମୟତା ମଧ୍ୟରେ ।

କିନ୍ତୁ ବିଂଶ ଯୁଗର ଦୁସ୍ଥିତିକୁ ପ୍ରକାଶ କରିବାକୁ ଯାଇ କେତେକ କବି 'ମୃତ୍ୟୁ-ଚେତନା'କୁ ଏକମାତ୍ର ମାଧ୍ୟମ ବୋଲି ଧରି ନେଇ ଗତାନୁଗତିକ ଭଙ୍ଗୀରେ ଏପରି କବିତା ଲେଖିଛନ୍ତି ଯାହାକି ରସୋତ୍ତୀର୍ଣ୍ଣ ହୋଇପାରୁ ନାହିଁ । ଫଳରେ କବିତାରେ ଭାଷାଗତ କ୍ଲିଷ୍ଟ ଏବଂ ବକ୍ତବ୍ୟରେ ଦୁର୍ବୋଧତା ଦେଖାଯାଉଛି । ସେ ପ୍ରକାର ଆଧୁନିକ କବିତାଗୁଡ଼ିକ monotonous ହୋଇଯାଉଛି । କବିତାର Communication Value ନଷ୍ଟ ହେବାର ଦେଖାଯାଉଛି । ତେଣୁ ଅନେକ ଆଧୁନିକ କବିତା ଦୁର୍ବୋଧତା ଏବଂ ଏକ ବୌଦ୍ଧିକତା ଦୋଷରେ ଅଭିଯୁକ୍ତ । ଏ କ୍ଷେତ୍ରରେ ପାଠକମାନଙ୍କର ଏହି ପ୍ରକାର ଅଭିଯୋଗର ଯଥାର୍ଥତା ରହିଛି ।

ଯୁଗ ଯନ୍ତ୍ରଣାର ଗଭୀର ଅନୁଭୂତି ଓ ତୀବ୍ର ସମ୍ବେଦନଶୀଳତା ନ ଥିଲେ ଆଧୁନିକ "ମୃତ୍ୟୁ-ଚେତନା" ସମ୍ବଳିତ କବିତାଗୁଡ଼ିକ ରସୋତ୍ତୀର୍ଣ୍ଣ ହୋଇ ପାରିବନି । ଅନ୍ୟ ପକ୍ଷରେ କେତେକ କବିତାରେ ଆତ୍ମଚେତନାର ଉଗ୍ର ନେତି ଭାବ ପାଠକକୁ ଅତି ବିଷାଦବାଦୀ କରି ପକାଏ ଏବଂ ନୈରାଶ୍ୟରେ ଆଚ୍ଛନ୍ନ କରେ । ଫଳରେ କବି ପାଠକଙ୍କର ହୃଦୟ ମୃତ୍ୟୁ-ଚେତନାରୁ ବିଚ୍ୟୁତ ହୋଇ ଏକ ଅଖଣ୍ଡ ଶୂନ୍ୟତାର ହା-ହା-କାରରେ ପରିପୂର୍ଣ୍ଣ ହୋଇଉଠେ । ସତେ ଯେପରି ଏକ Freudian death in stinct କବିର ହୃଦୟକୁ ଅହରହ ଜର୍ଜରିତ କରୁଛି ।

ଉନବିଂଶ ଶତାବ୍ଦୀର କେତେକ କବିମାନଙ୍କର ବିଷାଦବାଦକୁ ଆକ୍ଷେପ କରି ଇଂଲଣ୍ଡର ବିଶିଷ୍ଟ ଚିନ୍ତାନାୟକColin wilson ଲେଖିଛନ୍ତି –

In the Ninteenth Century this wind of wo\u0331rld rejection came to a head in poets who called themselves romantics. Most of them belived that the poet was never istencied for this world dreary, and heartbreaking as it is. And yet he has certain moments when he feels curiously immortal, God like as if hovering above the world, untenched by its dullness. is this

feeling, an illusion, like an opium-dream ? dream ? The romantics were obviously inclined to believe so, for large numbers of them committted suicide, of died of tuberculosis. [The Outsider' Page-314]

ଏକଥା ସତ ଯେ ଆଧୁନିକ ବିଜ୍ଞାନର ଅଭୂତପୂର୍ବ ପ୍ରଗତି ବିଭିନ୍ନ ରାଜନୈତିକ ଚିନ୍ତାଧାରା, ଫ୍ରଏଡ଼ିୟ ମନସ୍ତତ୍ତ୍ୱ ଓ ଆଧୁନିକ ସ୍ଥିତିବାଦୀ (Existential phiolsophy) ମଣିଷ ମନରେ ଆଣି ଦେଇଛି ନାରୀଶ୍ୱର ଚିନ୍ତାଧାରା । ଫଳରେ ଈଶ୍ୱରଙ୍କୁ ସେ ହତ୍ୟା କରିଛି । ସମାଜ ଓ ଐତିହ୍ୟର ସମସ୍ତ ମୂଲ୍ୟବୋଧ ଉପରୁ ଆସ୍ଥା ହରାଇଛି । ତା'ର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ଉପରେ ବିଶ୍ୱାସ ରହୁନାହିଁ । ଏକ ଅନନ୍ତ ମହାକାଳର ଶୂନ୍ୟତାରେ ଭରି ଉଠିଛି ଆଧୁନିକ ମଣିଷ ଦେହ, ମନ, ହୃଦୟ । ଧର୍ମ ଧର୍ମ ମଧ୍ୟରେ ଯୁଦ୍ଧ, ଦୁଇ ଦୁଇଟି ବିଶ୍ୱ ମହାସମରର ଭୟାବହ ଧ୍ୱଂସଲୀଳା-ଢାକା, ନୂଆଖାଲି, କୋରିଆ, ଭିଏତ୍‌ନାମ ଓ ବିରୁଟ୍‌ର ଲକ୍ଷ ଲକ୍ଷ ମଣିଷର ମୃତ୍ୟୁଲୀଳା ମଣିଷର ଆତ୍ମ-ବିଶ୍ୱାସହୀନତାକୁ ଅଧିକ ତୀବ୍ର ଓ ଭୟଙ୍କର କରିଦେଇଛି । ଫଳରେ ଆଜିର କବିତାରେ ଦେଖାଦେଇଛି ମୃତ୍ୟୁର ନାରକୀୟ ଚିତ୍ର ଓ ମୃତ୍ୟୁ -ଚେତନା, ଏ ବିଂଶ ଯୁଗର ଅନ୍ତଃଦଗ୍‌ଧତାର କରୁଣ ଚିତ୍ର ଯେତେ ବାସ୍ତବଧର୍ମୀ, ଯେତେ ଆତ୍ମ ଜିଜ୍ଞାସର ନୂତନ ସ୍ୱର ଲିପି ହେଉନା କାହିଁକି ଏହା ଯଦି ମୁକ୍ତିକାମୀ ଲାଞ୍ଛିତ ମଣିଷ ମନକୁ 'କ୍ଷୟିଷ୍ଣୁ ଚେତନା'ର ଅବର୍ଣ୍ଣନୀୟ ଉଦ୍‌ବେଗ, ବିଷାଦ ଏବଂ ନିଃସଙ୍ଗତାରେ ଅବସନ୍ନ କରିଦିଏ ଏବଂ ''ଦେବତାର କରୁଣା'' ଉପରେ ନିର୍ଭର କରି ଅଳୀକ ଶାନ୍ତି-ସ୍ୱପ୍ନର କୁହେଳିକା ମନରେ ସୃଷ୍ଟି କରାଏ ତେବେ ଯୁଗ ଯୁଗର ମଣିଷର ମୁକ୍ତି କାମନା ଓ ବ୍ୟାକୁଳତା ସ୍ୱପ୍ନରେ ହିଁ ରହିଯିବ । ବିଷାଦ, ଶୂନ୍ୟବାଦ ଓ ଭାଗ୍ୟବାଦରେ ମଣିଷର ମନ ଦଗ୍‌ଧିଭୂତ ନହେଉ ଏହା ହିଁ ପ୍ରଗତିଶୀଳ ଲେଖକର କାମ୍ୟ । ଯୁଗେଯୁଗେ ମହାମାନବ ସମାଜରେ ଅବତୀର୍ଣ୍ଣ ହୋଇଛନ୍ତି ଓ ମଣିଷକୁ ଉଦ୍‌ବୁଦ୍ଧ କରାଇ ଅତିମାନସ ସ୍ତରକୁ ନେବାପାଇଁ ଚେଷ୍ଟା କରିଛନ୍ତି । କିନ୍ତୁ ସେ ସବୁ ଚେଷ୍ଟା ବିଫଳ ହୋଇଛି । କାରଣ ମଣିଷ ସ୍ୱାଧୀନ ଭାବରେ ବିଚାର କରି ସାମାଜିକ ପ୍ରଗତି ପାଇଁ ଆତ୍ମତ୍ୟାଗ କରି ଜୀବନ ଉତ୍ସର୍ଗ କରିବାର ଆତ୍ମଶକ୍ତି ଅର୍ଜନ କରି ପାରି ନାହିଁ । ଯୁଗ ମାନବକୁ ଦେବତା କରି ପୂଜା କରି ପୁଣି ତାକୁ କେତେବେଳେ ହତ୍ୟା କରିଛି ଏବଂ ଶେଷରେ ସେ ମହାମାନବର ବାଣୀକୁ ଭୁଲି ଦେବତା ପୂଜା କିମ୍ବା ଭାଗ୍ୟବାଦରେ ବିଶ୍ୱାସ କରି ନିଃଷ୍କ୍ରିୟତାର ଯୂପକାଷ୍ଠରେ ନିଜର ପ୍ରାଣ ଚେତନା ଓ ପ୍ରାଣ ପ୍ରାଚୁର୍ଯ୍ୟକୁ ବଳି ଦେଇଛି । ଫଳରେ ବିଂଶ ଯୁଗର ମଣିଷ ମନରେ ଯେଉଁ ଦୁର୍ବାର ଶକ୍ତି ଏବଂ ପ୍ରାଣ ପ୍ରାଚୁର୍ଯ୍ୟ ରହିଛି ତାହା ସମାଜର ପ୍ରଗତି ପାଇଁ ସୃଜନଶୀଳ ସୃଷ୍ଟିରେ ନିୟୋଜିତ ହୋଇପାରୁନି । ମଣିଷର ଏହି ଚେତନାର ସଙ୍କଟ ମଧ୍ୟରେ ଜୀବନର ଦୁସ୍ଥିତି ଚିନ୍ତାରେ ସେ ମଣିଷ ଆଜି ନିଃଷ୍କ୍ରିୟ

ଓ ବିଷାଦଗ୍ରସ୍ତ । ଏହି ଦୁଃସ୍ଥିତିରୁ ରକ୍ଷା ପାଇବା ପାଇଁ ଊନବିଂଶ ଶତାବ୍ଦୀର ରୋମାଣ୍ଟିକ କବି ପରି ଆଜିର ମଧ୍ୟ କବି ଖୋଜୁଛି ପଳାୟନର ପଥ–ଭାଗ୍ୟବାଦ, ଶୂନ୍ୟବାଦ କିମ୍ବା ଅଜ୍ଞେୟ ଆଧିଭୌତିକ ଦେବତାର କରୁଣା ମଧ୍ୟରେ ।

ଆଧୁନିକ ବିଂଶ ଯୁଗର ଜୀବନରେ ଅସୀମ ଦୁଃସ୍ଥିତି ଅନେକ ଦୁଃଖ, ଯନ୍ତ୍ରଣା, ଯୁଦ୍ଧ ଓ ଗଣହତ୍ୟାର ଭୟାବହତା ରହିଛି ସତ, କିନ୍ତୁ ଏହି ଦୁଃସ୍ଥିତିର ଚିତ୍ରଣ ଏପରି ହେବା ଉଚିତ ଯାହା ମଣିଷ ଚେତନାକୁ ଏକ ନୂତନ ଦିଗନ୍ତର ଆଲୋକରେ ଉଦ୍‌ଭାସିତ ଓ ରସାଣିତ କରିବ । ନୂତନ ଜୀବନ ପାଇଁ ନୂତନ ବିଶ୍ୱାସ ପାଇଁ ତା'ମନରେ ଭରି ଦେବ ଅଜସ୍ର ପ୍ରାଣ ପ୍ରାଚୁର୍ଯ୍ୟ । ଏହି ପ୍ରକାର ଜୀବନ ଚେତନାରେ ଉଦ୍‌ବେଳିତ ହୋଇ ଆଜିର କବି ଯୁଗଯନ୍ତ୍ରଣାର ଚିତ୍ରଣ ମଧ୍ୟରେ–ମୃତ୍ୟୁ–ଚେତନାର 'ନେତି''ନେତି' ଧ୍ୱନି ମଧ୍ୟରେ କବି 'ଇତି'ର ସନ୍ଧାନ ପାଉ ଓ ଉଦାର କଣ୍ଠରେ ଗାଇଉଠୁ କବିତାର ଗୀତି ଏବଂ ସେ କବିତାର ମର୍ମବାଣୀ ହେଉ ଏକ ନୂତନ ମାନବବାଦର ସ୍ୱଗତୋକ୍ତି–

''ମୁଁ କବି, ମୁଁ ଦ୍ରଷ୍ଟା, ମୁଁ ସ୍ରଷ୍ଟା । ମୁଁ ଚାହେଁ ନାହିଁ ନିର୍ବାଣ କିମ୍ବା ଦେବତାର କରୁଣା, ମୁଁ ଚାହେଁ ଯୁଗ ଯୁଗର ଦଗ୍ଧ ଆତ୍ମାର ଶାନ୍ତି, ପ୍ରଗତି ଓ ମୁକ୍ତି । ମୃତ୍ୟୁ ଯନ୍ତ୍ରଣାର ପୋଡ଼ାଭୂଇଁ ମଝିରେ ଠିଆ ହୋଇ ମୁଁ ଗାଇବି–ସତ୍ୟ–ଶିବ–ସୁନ୍ଦରର ସଙ୍ଗୀତ । ପ୍ରେମ–ମୁକ୍ତି–ଜୀବନର ସଙ୍ଗୀତ ।''



**ଗ୍ରନ୍ଥ ସୂଚୀ :**


୧. "The Waste land"- T.S.Eliot

୨. "The Outsider"- Colin Wilson

୩. 'ଏକ ଦିନାନ୍ତେର ଦିଗନ୍ତ''– ଲୋକନାଥ ଭଟ୍ଟାଚାର୍ଯ୍ୟ

୪. 'ବିଷ୍ଣୁଦେର କବିତା'

୫. 'ଅନେକ କୋଠରୀ'–ରମାକାନ୍ତ ରଥ

୬. 'ଅଷ୍ଟପଦୀ' – ସୀତାକାନ୍ତ ମହାପାତ୍ର

୭. 'ଧୂସର ପାଣ୍ଡୁଲିପି'– ଜୀବନାନନ୍ଦ ଦାସ

୮. 'ନିର୍ଜନ ନକ୍ଷତ୍ର'–ଦୀପକ ମିଶ୍ର

# ''କଳା ପାଇଁ କଳା''– ଏକ ଅଭିଭାଷଣ

## କଳାର ସଂଜ୍ଞା :

ଅନୁଭୂତିର ରସୋତ୍ତୀର୍ଣ୍ଣ ଅଭିବ୍ୟକ୍ତି ହିଁ କଳା । ଏହି ଅନୁଭୂତି ପ୍ରଥମେ ସ୍ରଷ୍ଟାର ମନରେ ଏକ ଭାବର ତରଙ୍ଗ ସୃଷ୍ଟି କରେ ଏବଂ ସେହି ଉଦ୍‌ବେଳିତ ତରଙ୍ଗ ଯେପରି ବେଳାଭୂମିକୁ ପ୍ଲାବିତ କରେ–ସେହିପରି କଳା, ଦ୍ରଷ୍ଟା–ରସଗ୍ରାହୀ ପାଠକ ମନକୁ ଉଦ୍‌ବେଳିତ ଓ ଅଭିଭୂତ କରେ । ଏହି ଅନୁଭୂତି ସଞ୍ଚାରୀ, ଅଭିବ୍ୟକ୍ତି ହିଁ ମଣିଷ ଜୀବନର ଏକ ସ୍ୱାଭାବିକ, ପ୍ରାକୃତିକ ପ୍ରକ୍ରିୟା – ଏରିଷ୍ଟଟଲଙ୍କ ମତରେ ଏହି କଳା ହେଉଛି ମଣିଷ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରକ୍ରିୟା – ଯାହା ମଣିଷର ସୁସ୍ଥ ଜୀବନ ପାଇଁ ପ୍ରେରଣା ଦିଏ । ତେଣୁ ସେ କହିଥିଲେ –"The end of fine arts is to give pleasure or natural enjoyments[୧] । କଳା ମଣିଷ ଜୀବନକୁ ଆନନ୍ଦ ଦିଏ, ଏହି ଆନନ୍ଦବୋଧ ମଧ୍ୟରେ କଳାକାର ତା'ର ଅନ୍ତରର ସୌନ୍ଦର୍ଯ୍ୟବୋଧ ଓ ବିଶ୍ୱର ବର୍ହି–ଜଗତର ସୌନ୍ଦର୍ଯ୍ୟକୁ ଅନୁଭବ କରି ପରମ ଶାନ୍ତି ପାଏ ଏବଂ ସେହି ସତ୍ୟ–ଶିବ–ସୁନ୍ଦରର ପ୍ରଶାନ୍ତି ଭାବ ଅନ୍ୟ ପ୍ରାଣକୁ ବିମୋହିତ କରେ ।

## କଳାର ଆଦର୍ଶ :

କଳାର ଆଦର୍ଶ ହେଉଛି – ବିଶ୍ୱର ସତ୍, ଚିତ୍ ଓ ଆନନ୍ଦର ଜଗତକୁ ଉଦ୍‌ଘାଟନ କରି ମଣିଷର ଜୀବନକୁ ଏକ ନୂତନ ପ୍ରାଣସ୍ପର୍ଶରେ ଆନନ୍ଦର ଅନୁଭୂତିରେ ଅଭିଭୂତ କରିବା । ଏହିଠାରେ ପ୍ରଶ୍ନ ଉଠେ– କଳାର ଆଦର୍ଶ କ'ଣ କେବଳ – ଆନନ୍ଦ ଦେବା ? ଏହା କ'ଣ ସମାଜ ନିରପେକ୍ଷ ସୃଷ୍ଟି ?

କଳାର ଏହି ଆଦର୍ଶ ନେଇ, ବିଭିନ୍ନ କଳାକାର ମନରେ ମତଦ୍ୱୈଧ ଦେଖା ଦେଇଛି । ଏହି ମତଦ୍ୱୈଧରୁ ଦୁଇଟି ପରସ୍ପର ବିରୋଧୀ ମତବାଦ ଜନ୍ମଲାଭ କରିଛି– ପ୍ରଥମତଃ କଳା, କଳା ପାଇଁ ଏବଂ ଦ୍ୱିତୀୟରେ କଳା ସମାଜ ପାଇଁ ଉଦ୍ଦିଷ୍ଟ ।

**କଳା ପାଇଁ କଳା :**

'କଳା ପାଇଁ କଳା- ଏହି ମତବାଦର ପୃଷ୍ଠପୋଷକତା କରି ଅଷ୍ଟାଦଶ ଶତାବ୍ଦୀର ରୋମାଣ୍ଟିକ୍ କବି ଏବଂ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ କେତେକ ଦାର୍ଶନିକ ଓ ସମାଲୋଚକମାନେ ପ୍ରଚାର ଆରମ୍ଭ କଲେ ଯେ- କଳା ହିଁ କଳାର ଆଦର୍ଶ । ସୌନ୍ଦର୍ଯ୍ୟ ପ୍ରକାଶ ହିଁ କଳାର ଚରମ ଓ ପରମ ଲକ୍ଷ୍ୟ । ଏହି ସୌନ୍ଦର୍ଯ୍ୟବୋଧରେ ଶ୍ଲୀଳ-ଅଶ୍ଲୀଳ, ସତ୍ୟ-ମିଥ୍ୟା ପ୍ରକାଶର ବିଚାର ନାହିଁ । କଳ୍ପନା-ବିଳାସ ହିଁ ଏହି ମତବାଦର ପ୍ରାଣକେନ୍ଦ୍ର ।

ୱାର୍ଡ଼ସ୍‌ୱାର୍ଥ, କଲେରିଜ, ହୁଇସଲାର, ଗୋଥେ ପ୍ରଭୃତି କବି, ଜର୍ମାନର ଶ୍ରେଷ୍ଠ ସୌନ୍ଦର୍ଯ୍ୟ ତତ୍ତ୍ୱବିଦ କ୍ରୋଚେ, ଫ୍ରାନସର କବି ବଦଲେୟାର ଓ ଔପନ୍ୟାସିକ ଫ୍ଲୁବାର୍ଟ, ଭାରତର କବିଗୁରୁ ରବୀନ୍ଦ୍ରନାଥ- କଳାର ସାମାଜିକ ମୂଲ୍ୟବୋଧକୁ ଅଧିକ ଗୁରୁତ୍ୱ ନ ଦେଇ କଳାର ଶୈଳ୍ପିକ ମୂଲ୍ୟକୁ ଏକମାତ୍ର ମୂଲ୍ୟବୋଧ ବୋଲି ମନେ କଲେ । କଳାବିତ୍ କବିଙ୍କ ମନରେ ନୈତିକ - ନିର୍ଦ୍ଦେଶ କବିତାର କଳାତ୍ମକ ମୂଲ୍ୟକୁ ନଷ୍ଟ କରେ ଫଳରେ କବିତା ରସୋତ୍ତୀର୍ଣ୍ଣ ହୋଇପାରେ ନାହିଁ । ତେଣୁ ଫ୍ରାନ୍‌ସର ଊନବିଂଶ ଶତାବ୍ଦୀର ବଦଲେୟାର କହିଥିଲେ -

"Poet has no end beyond itself, if a poet has followed a moral end, he has dominated his poetic force, and the result likely to be bad."

ବିଖ୍ୟାତ ଇଂରେଜ ସମାଲୋଚକ ବ୍ରାଡ଼ଲେ କଳା ପାଇଁ ହିଁ କଳା ଉଦ୍ଦିଷ୍ଟ, ଏହି ମତବାଦ ଉପରେ ଅଧିକ ଗୁରୁତ୍ୱ ଦେଇ କହିଲେ ଯେ ବର୍ହିଜଗତ ସହିତ କଳାର କୌଣସି ସମ୍ପର୍କ ନାହିଁ - ଏହା ସଂପୂର୍ଣ୍ଣ ଭାବରେ ସ୍ୱାଧୀନ ଓ ବ୍ୟକ୍ତି -ସ୍ୱାତନ୍ତ୍ର ସର୍ବସ୍ୱ-(୨)

**ସମାଜ ପାଇଁ କଳା ଉଦ୍ଦିଷ୍ଟ :**

୧୭୯୮ର ଫ୍ରାନ୍ସ ବିପ୍ଳବ, ୧୯୧୪ ପ୍ରଥମ ମହାସମର, ୧୯୨୫ ଋଷ ବିପ୍ଳବ, ୧୯୩୯ର ଦ୍ୱିତୀୟ ମହାସମର, ବୈଜ୍ଞାନିକ ଚିନ୍ତାଧାରା, ମାର୍କସଙ୍କ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦ ଏବଂ ଫ୍ରୟେଡ଼ଙ୍କ ସ୍ୱପ୍ନତତ୍ତ୍ୱ, କଳା ପାଇଁ କଳା - ଏତି ଚିରାଚରିତ ପାରମ୍ପରିକ ମୂଲ୍ୟବୋଧକୁ ବଦଳାଇ ଦେଲା । କଳାର ସାମାଜିକ ମୂଲ୍ୟବୋଧର ପ୍ରଥମ ଦାର୍ଶନିକ ହେଉଛନ୍ତି- ଫ୍ରାନ୍‌ସର ଦାର୍ଶନିକ କୋମତେ (୧୭୮୯-୧୮୫୭) । ତାଙ୍କ ମତରେ ଉନ୍ନତ ସମାଜ-ପ୍ରତିଷ୍ଠା ହିଁ କଳାର ଉଦ୍ଦେଶ୍ୟ ହେବା ଉଚିତ । ସାହିତ୍ୟ ସମାଜ ନିରପେକ୍ଷ ହୋଇପାରେନା । ସମାଜ ଓ ଜୀବନକୁ ଅଧ୍ୟୟନ କରି ସାମାଜିକ କଲ୍ୟାଣ ନିମିତ୍ତ ଶିଳ୍ପୀମାନେ କଳା-ସାଧନାରେ ବ୍ରତୀ ହେବା ଉଚିତ । ରସକିନ୍ କଳାର ଶିକ୍ଷାମୂଳକ ମୂଲ୍ୟବୋଧର ଉପରେ

ଗୁରୁତ୍ୱ ଦେଇ କହିଲେ - Arts are didactic to the people. କବି ଶେଲୀ ଦିନେ ଗାଉଥିଲେ - I love not man less, but nature more ଏବଂ ସେ କହୁଥିଲେ didactic poetry is my abhorance. କିନ୍ତୁ ଆଜିର କବି, ନିଛକ କଳ୍ପନା ବିଳାସ ଅପେକ୍ଷା ଜୀବନକୁ ଅଧିକ ଭଲପାଉଛି-ତେଣୁ ସେ ଗାଉଛି -I love not the nature less but man more. କବି ସଚ୍ଚି ରାଉତରାୟଙ୍କ ଭାଷାରେ ଆଧୁନିକ ମାନବବାଦୀ କବି ଗାଉଛି-

"ମୁଁ ସଚ୍ଚିରାଉତରା
ନୁହେଁ ମୁଁ ଟାଗୋର ବା ଶେଲୀ
ମୁଁ ଏଇ ମାଟିର ଧରା,
ଆକାଶର କବି
କାମ ନୁହେଁ ମୋ ଖାଲି
ଆଙ୍କିବା କାଗଜର ଛବି

(ରାଜଜେମା-ପାଣ୍ଡୁଲିପି)

କିମ୍ବା ଜୀବନର ଦୁଃସ୍ଥିତିରେ ମୁହ୍ୟମାନ ହୋଇ କବି ସୀତାକାନ୍ତଙ୍କ ଭାଷାରେ ଆଧୁନିକ କବି ଗାଉଛି -

"ଜ୍ୱଳନର ଶେଷ ଖାଲି ମହାସତ୍ୟ
ସତ୍ୟ ଖାଲି, ରତିକ୍ଲାନ୍ତ, ଦେହର ପାଉଁଶ
କୋକେଇରେ ବୁହା ହୋଇ,
ପୋଡ଼ାହେବା ପୋତାହେବା
ନିର୍ବିକାର, ନିର୍ଲିପ୍ତ ଶ୍ମଶାନେ
ସତ୍ୟ ସେଇ ପାଉଁଶ ଓ ହାଡ଼ର ସମ୍ପତ୍ତି
ସ୍ମୃତିର ରୂପ ଓ ନାମସବୁ ମିଛ
ସତ୍ୟ ଖାଲି, ଶୂନ୍ୟତା, ଅସ୍ଥିତି ।

(ସୀତାକାନ୍ତ ମହାପାତ୍ରଙ୍କ-ତ୍ରିଶଙ୍କୁର ମଧ ସର୍ଗ -୩)

ସେହିପରି ମଣିଷର ଅଶ୍ରୁ, ଦୁଃଖ ଦୁଃସ୍ଥିତିରେ ମୁହ୍ୟମାନ ହୋଇ ଋଷୀୟ କବି ମାୟାକୋଭିସ୍କି ଗାଇଲେ -

Whereever pain is there am I
On single tear that is shed
I myself am crufifed.(Cloud in Trouser)

ତେଣୁ ଆଜି ବିଂଶଯୁଗରେ କଳାର ପ୍ରଧାନ ଲକ୍ଷ୍ୟ ହେଉଛି ଅଗଣିତ ନିଷ୍ପେଷିତ ଜୀବନ ପ୍ରତି ସହାନୁଭୂତି ପ୍ରକାଶ କରିବା ଓ ସାମୂହିକ ଗଣ ଜୀବନ ସହିତ ଐକାନ୍ତିକ ସଂଯୋଗ ସ୍ଥାପନ କରିବା । ବିଶ୍ୱର କେଉଁ ନିଭୃତ ବନ୍ଦୀଶାଳାରେ ଯେଉଁ ମାନବାତ୍ମାର ଆତ୍ମା ଯନ୍ତ୍ରଣାରେ ବନ୍ଦୀଶାଳାରେ ଅଶ୍ରୁପାତ କରୁଛି ତା'ପାଇଁ ଯଦି କବି କଳାକାରର ପ୍ରାଣରେ ଯଦି ଆଲୋଡ଼ନ ସୃଷ୍ଟି ନ ହେଉଛି ତାହାହେଲେ କଳା ଏକ ନିରର୍ଥକ ସ୍ୱପ୍ନବିଳାସ- ପଳାୟନବାଦର ପ୍ରତୀକ ମାତ୍ର । ବିଖ୍ୟାତ ସାହିତ୍ୟିକ ରୋମାଁରୋଲାଁ ସାହିତ୍ୟରେ ଜୀବନ ପ୍ରତି ସମ୍ବେଦନାକୁ ଶ୍ରେଷ୍ଠ ମୂଲ୍ୟବୋଧ ରୂପେ ସ୍ୱୀକାର କରି ମୁକ୍ତ କଣ୍ଠରେ ଘୋଷଣା କଲେ -There are indeed great artists, who express, only themselves but greatest of all are those whose heart beat for all men. ସାହିତ୍ୟ, ଚିତ୍ର ଭାସ୍କାର୍ଯ୍ୟରେ ସାମାଜିକ କଲ୍ୟାଣବୋଧର ସ୍ୱାକ୍ଷର ରହିଲେ ମଧ କଳାର କଳାତ୍ମକ ମୂଲ୍ୟବୋଧ ନଷ୍ଟ ହେବ ନାହିଁ ବୋଲି ବିଶିଷ୍ଟ ସମାଲୋଚକଙ୍କ ମତ- କାରଣ ଏହି ସାମାଜିକ ମୂଲ୍ୟବୋଧ ଜୀବନ ପ୍ରତି ଗଭୀର ମମତା ଏପରି କଳାତ୍ମକ ଶୈଳୀରେ ପ୍ରକାଶିତ ହେବା ଉଚିତ ଯାହା ରସୋତ୍ତୀର୍ଣ୍ଣ ହୋଇପାରିବ ଓ ଭାବସଞ୍ଚାର କରି ଅନ୍ୟ ପ୍ରାଣକୁ ଅଭିଭୂତ କରିପାରିବ । କିନ୍ତୁ ଏଠାରେ ଆଉ ଏକ ବିବଦମାନ ପ୍ରଶ୍ନ ଉଠୁଛି ତାହା ହେଉଛି -ସାମାଜିକ କଲ୍ୟାଣ ସାଧନ ପାଇଁ କଳାକୁ ଏକ ମାଧମ କଲେ, ଅନେକ ସମୟରେ ଗଣଆଭିମୁଖ୍ୟର ବୈପ୍ଳବିକ ଚିନ୍ତାଧାରା, କଳାର କଳାତ୍ମକ ଗୁଣକୁ ବ୍ୟାହତ କରିବାର ବିପଦ ରହିଛି । ଏହି କଳା ଯେତେବେଳେ ସୀମିତ ଏକ ନିର୍ଦ୍ଦିଷ୍ଟ ରାଜନୈତିକ ମତବାଦର ଗଣ୍ଡି ମଧରେ ଆବଦ୍ଧ ହୋଇଯାଏ, ସେତେବେଳେ ସ୍ରଷ୍ଟା ତା'ର ସୃଜନଶୀଳତା ହରାଇ ବସାଏ ଏବଂ ତା'ର କବିତା, ତା'ର ସଙ୍ଗୀତ ପ୍ରଚାରଧର୍ମୀ ହୋଇଉଠେ- ନିରସ ହୋଇଉଠେ-ପ୍ରାଣକୁ ଛୁଇଁ ପାରେନା । ସାହିତ୍ୟ committed ହେବ ସତ କିନ୍ତୁ ତାହା କେତେଦୂର committed ହେବ-ତାହାର ସୀମାରେଖା ନିର୍ଣ୍ଣୟ କରିବା 'କଳା ହିଁ କଳାର ଆଦର୍ଶକୁ' ସୀମାବଦ୍ଧ କରି ରଖିବା ସହିତ ସମାନ ହେବ ।

ଏକଦା ହିଟଲରଙ୍କ ଗୋଏବେଲ ସାହିତ୍ୟକୁ ନାଜିବାଦର ପ୍ରଚାର ଓ ପ୍ରସାର ପାଇଁ ଏପରି ନିୟୋଜିତ କଲେ ଯେ ସାହିତ୍ୟିକମାନେ ଭୟ ଓ ଆଶଙ୍କାରେ ଦେଶତ୍ୟାଗ କରି ଅନ୍ୟ ଦେଶକୁ ପଳାଇଲେ ।

**ଉପସଂହାର –**

ଏହି ପରିପ୍ରେକ୍ଷୀରେ ଆଜିର ସାହିତ୍ୟିକ ବନ୍ଧୁମାନେ ଓ ତରୁଣ କଳାକାରମାନେ କଳାର ପ୍ରକୃତ ସ୍ୱରୂପକୁ ଗଭୀରଭାବେ ଅନୁଧାନ କରି କଳା-ସାଧନାରେ ବ୍ରତୀ ହେବା

ଉଚିତ । ମୁଁ ପ୍ରଥମରୁ କହିଛି -କଳା ସତ୍ୟ ଶିବ-ସୁନ୍ଦରର ଏକ ମହାନ୍ ଅଭିରୁଚିର ଅଭିବ୍ୟକ୍ତି । ଗଭୀର ସୌନ୍ଦର୍ଯ୍ୟବୋଧକ ଚେତନାର ଉତ୍ତରଣ ହିଁ ଏହାର ଏକ ମୁଖ୍ୟ ଉଦ୍ଦେଶ୍ୟ । ସମାଜ-କଲ୍ୟାଣ ପାଇଁ ଆଲୋଡ଼ନ ଓ ବିଶ୍ୱଜୀବନ ପ୍ରତି ମମତାବୋଧ ଏହି ଚେତନାର ଏକ ପ୍ରଚ୍ଛନ୍ନ ପ୍ରାଣସତ୍ତା । ବିଖ୍ୟାତ କବି ଟି.ଏସ୍.ଇଲିୟଟ୍ କହିଥିଲେ-କବିତା, କବିର ଆତ୍ମ-ବିଳାସ ନୁହେଁ ବିଶ୍ୱଜୀବନର କରୁଣ ପ୍ରତିଧ୍ୱନି । ସେଥିରେ ସୌନ୍ଦର୍ଯ୍ୟ ରହିଛି - ସେଥିରେ ସତ୍ୟ ରହିଛି ଓ କଲ୍ୟାଣ ରହିଛି । ତେଣୁ ଏଲିୟଟ୍ଙ୍କ ମତରେ କବିତା ହେଉଛି -'The Still and music of humanity.'ଯାହା ସତ୍ୟ, ତାହା ସୁନ୍ଦର, ତାହା କଲ୍ୟାଣକର ତାହା ହିଁ ସଙ୍ଗୀତ, ତାହା ହିଁ ସ୍ୱପ୍ନ । ତେଣୁ ଆଜି ସ୍ରଷ୍ଟା ସବୁ ପ୍ରକାର ବାଦ-ବିସମ୍ବାଦ, ଦେଶ କାଳପାତ୍ରର ଊର୍ଦ୍ଧ୍ୱରେ ରହି ଉଦାତ୍ତ କଣ୍ଠରେ କହେ -

"I have given my reading my account, my vision, my dream, my illusion. Call it what you will. If there is any lesson, in it is yours to draw not mine to preach."



# ସମାଜ

ମଣିଷ ମାତ୍ରେ ଏକ ସାମାଜିକ ପ୍ରାଣୀ । ବ୍ୟକ୍ତିଗତ ସୁଖ-ସ୍ୱାଚ୍ଛନ୍ଦ୍ୟ ସହିତ, ସମାଜର ପ୍ରଗତି ପାଇଁ ସଚେତନ ହେବା ଦ୍ୱାରା ଏକାଧାରରେ ବ୍ୟକ୍ତି ଓ ସମାଜର ଉନ୍ନତି ସମ୍ଭବ ହୁଏ । ଏହି ସାମାଜିକ ସଚେତତନତାର ପ୍ରସାର ପାଇଁ ପ୍ରତ୍ୟେକ ସୁନାଗରିକ ସମାଜର ବିଭିନ୍ନ ସମସ୍ୟା ସମ୍ପର୍କରେ ଅବହିତ ହେବା ଉଚିତ । ଏହି ଜାଗ୍ରତ ସାମାଜିକ ସଚେତନତା ଉପରେ ଗଣତନ୍ତ୍ରର ଭବିଷ୍ୟତ ନିର୍ଭର କରେ ।

---



# ଭାରତୀୟ ସମାଜରେ
# ବରିଷ୍ଠ ନାଗରିକଙ୍କ ସମସ୍ୟା– ଏକ ଅନୁଧ୍ୟାନ

ସାମାଜିକ ମୂଲ୍ୟବୋଧର ଅବକ୍ଷୟ, ଯୌଥ ପରିବାର (Joint Family)ର ବିଲୟ ଓ ଭାରତର ଜନସଂଖ୍ୟାର ଅଭିବୃଦ୍ଧିର ସମସ୍ୟାଗୁଡ଼ିକ ଦେଶର ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଜୀବନକୁ ବିପନ୍ନ କରିବା ସଙ୍ଗେସଙ୍ଗେ ବରିଷ୍ଠ ନାଗରିକମାନଙ୍କ ସ୍ଥିତିକୁ ମଧ୍ୟ ଦୁର୍ବଳ କରି ପକାଉଛି । ବର୍ତ୍ତମାନ ଭାରତର ଜନସଂଖ୍ୟା ୧୦୦କୋଟି । ପ୍ରତି ବର୍ଷ ପ୍ରାୟ ଏକ କୋଟିରୁ ଉର୍ଦ୍ଧ୍ୱ ଜନସଂଖ୍ୟା ବଢ଼ିବାରେ ଲାଗିଛି । ଫଳରେ ଭାରତରେ ଖାଦ୍ୟ, ସ୍ୱାସ୍ଥ୍ୟ ଓ ବାସପୋଯୋଗୀ ଗୃହର ଅଭାବ ବଢ଼ି ଚାଲିଛି । ବରିଷ୍ଠ ନାଗରିକ କହିଲେ ସାଧାରଣତଃ ଷାଠିଏ ବର୍ଷରୁ ଉର୍ଦ୍ଧ୍ୱ ନାଗରିକ ଗଣ, ଯେଉଁମାନଙ୍କର ଚାରୋଟି ମୁଖ୍ୟ ସମସ୍ୟା ଭାରତର ଅର୍ଥନୀତିଜ୍ଞ ଓ ପ୍ରଶାସକମାନଙ୍କ ଦୃଷ୍ଟି ଆକର୍ଷଣ କରିଛି । ସେଗୁଡ଼ିକ ହେଲା –

**୧. ବରିଷ୍ଠ ନାଗରିକମାନଙ୍କ ସ୍ୱାସ୍ଥ୍ୟଗତ ସମସ୍ୟା ।**

**୨. ସେମାନଙ୍କ ଆର୍ଥିକ ଅସ୍ୱଚ୍ଛଳତା**

**୩. ସେମାନଙ୍କ ପାଇଁ ବାସପୋଯୋଗୀ ଗୃହର ଅଭାବ**

**୪. ସେମାନଙ୍କ ଜୀବନର ନିଃସଙ୍ଗତା ।**

ଏହି ବରିଷ୍ଠ ନାଗରିକମାନଙ୍କ ମଧ୍ୟରେ ଅବସର ପ୍ରାପ୍ତ ସରକାରୀ କର୍ମଚାରୀ, ବେସରକାରୀ କର୍ମଚାରୀ ଓ ସହର ଓ ଗ୍ରାମାଞ୍ଚଳରେ ରହୁଥିବା ଅଗଣିତ ଅବହେଳିତ ବୃଦ୍ଧ ଓ ବୃଦ୍ଧାମାନଙ୍କର ଅବସ୍ଥା କ୍ରମେ କ୍ରମେ ଜଟିଳ ଓ ସମସ୍ୟା ବହୁଳ ହୋଇପଡୁଛି । ଗତ ତିନି ଦଶନ୍ଧିରେ ଭାରତୀୟମାନଙ୍କ ଆୟୁଷ (Longivity) ୪୫ ବର୍ଷରୁ ୬୮ ବର୍ଷକୁ ବଢ଼ିଯାଇଛି ଯାହା ଫଳରେ ବୃଦ୍ଧ ବୃଦ୍ଧାମାନଙ୍କ ସଂଖ୍ୟା ମଧ୍ୟ ବଢ଼ିବଢ଼ି ଚାଲିଛି । ବର୍ତ୍ତମାନ ବଳିଷ୍ଠ ନାଗରିକମାନଙ୍କ ସଂଖ୍ୟା ପ୍ରାଦ ଦଶକୋଟି ଏବଂ ଏହି ସଂଖ୍ୟା ବଢ଼ି ବଢ଼ି ୨୦ ବର୍ଷ ପରେ ପ୍ରାୟ ୧୪ କୋଟି ହେବ । ୨୦୨୦ ମସିହା ବେଳକୁ ଭାରତ,

ପୃଥିବୀର ଦ୍ୱିତୀୟ ବୃହତ୍ତମ ଦେଶ ହେବ ଯାହାର ବୃଦ୍ଧ ଲୋକ ସଂଖ୍ୟା ୧୪.୨୦କୋଟି ହେବ । ପଡ଼ୋଶୀ ଚୀନ ଦେଶର ବୃଦ୍ଧ ଲୋକଙ୍କ ସଂଖ୍ୟା ୨୩ କୋଟି ହେବ । ବାର୍ଦ୍ଧକ୍ୟ ବିଦ୍ୟାବିଶାରଦ (GERONTOLOFGIST) ମାନଙ୍କ ମତରେ, ଏହି ବୃଦ୍ଧଲୋକମାନଙ୍କ-ସାମାଜିକ ନିରାପତ୍ତା ବ୍ୟବସ୍ଥା (Social Security System) ଓ ସ୍ୱାସ୍ଥ୍ୟ-ସୁରକ୍ଷା ସମସ୍ୟା ଗୁରୁତ୍ୱର ଆକାର ଧାରଣ କରିବ । ତେଣୁ ବିଶ୍ୱର ପ୍ରମୁଖ ଉନ୍ନତ ଓ ଅନୁନ୍ନତ ଦେଶମାନେ, ଏ ବିଷୟରେ ଏକ ସୁଚିନ୍ତିତ ନୀତି ପ୍ରଣୟନ କରିବା ଉଚିତ । ଏହି ବରିଷ୍ଠ ବୃଦ୍ଧ ନାଗରିକମାନଙ୍କ ସମସ୍ୟା ସମ୍ପର୍କରେ ବିଶ୍ୱ-ଜନମତ ସୃଷ୍ଟି କରି, ସେମାନଙ୍କ ସମସ୍ୟାର ସମାଧାନ ପାଇଁ ଜାତିସଂଘ, ୧୯୯୯ ବର୍ଷକୁ ଆନ୍ତର୍ଜାତିକ ବରିଷ୍ଠ ନାଗରିକ ବର୍ଷ International year of elder person ଭାବରେ ପାଳନ କରିବାପାଇଁ ସବୁ ଦେଶର ନାଗରିକମାନଙ୍କୁ ଆହ୍ୱାନ କରିଛନ୍ତି । ଭାରତ ସରକାର ମଧ ଏ ସମ୍ପର୍କରେ ସରକାରୀ ନୀତି ପ୍ରଣୟନ ପାଇଁ ଉଚ୍ଚସ୍ତରୀୟ ଆଲୋଚନା ଓ କମିଟି ଗଠନ କରୁଛନ୍ତି । ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ(W.H.O) ଜଣେ ବରିଷ୍ଠ କର୍ମକର୍ତ୍ତା - Dr.Uton Muchtar Refer, Regional Director for South east Asia Region, World Health Day ଦିବସରେ ସତର୍କ କରିଦେଇ କହିଥିଲେ - "This trend of the aging of global population is perhapes one of the biggest challenges facing the world.The growing members of the older people mean that more and more people will be at higher risk of developing chronic and debilitating deseases."

**ବୃଦ୍ଧମାନଙ୍କ ସ୍ୱାସ୍ଥ୍ୟଗତ ସମସ୍ୟା :**

ଭାରତର ବରିଷ୍ଠ ବୃଦ୍ଧମାନଙ୍କ ସ୍ୱାସ୍ଥ୍ୟଗତ ସମସ୍ୟା ବର୍ତ୍ତମାନ ଗୁରୁତର ଆକାର ଧାରଣ କଲାଣି । କାରଣ, ଭାରତରେ ବୃଦ୍ଧମାନଙ୍କ ସ୍ୱାସ୍ଥ୍ୟର ଯତ୍ନ ନେବା ପାଇଁ କୌଣସି ନିର୍ଦ୍ଦିଷ୍ଟ ବିଧିବଦ୍ଧ ସରକାରୀ ନୀତି ନାହିଁ । ଅବସର ପ୍ରାପ୍ତ ସରକାରୀ ଓ ବେସରକାରୀ କର୍ମଚାରୀମାନେ ଏଥିପାଇଁ ଶାରୀରିକ ଓ ମାନସିକ ଯନ୍ତ୍ରଣା ଭୋଗୁଛନ୍ତି । ଏକ ସର୍ବେକ୍ଷଣରୁ ଜଣାପଡୁଛି ଯେ, ବରିଷ୍ଠ ନାଗରିକମାନଙ୍କ ମଧ୍ୟରୁ ୪୫ ପ୍ରତିଶତ ଦୁରାରୋଗ୍ୟ ବ୍ୟାଧି(Chronic diseases)ରେ ରୋଗଗ୍ରସ୍ତ ଓ ସେହି ରୋଗଗ୍ରସ୍ଥ ବୃଦ୍ଧମାନଙ୍କ ମଧ୍ୟରୁ ୫୪% ସଂପୂର୍ଣ୍ଣ ଅକର୍ମଣ୍ୟ ଅବସ୍ଥାରେ ଅତି ଦୟନୀୟ ଭାବରେ ଜୀବନଯାପନ କରୁଛନ୍ତି । କେନ୍ଦ୍ର ସରକାର ଅବସର ପ୍ରାପ୍ତ ସରକାରୀ କର୍ମଚାରୀମାନଙ୍କୁ ଯାହା ଚିକିତ୍ସା ଭତ୍ତା ଦେଉଛନ୍ତି, ତାହା ସମୁଦ୍ରକୁ ଶଙ୍ଖେ ପାଣି । ରାଜ୍ୟ ସରକାରମାନେ ଅବସପ୍ରାପ୍ତ ସରକାରୀ କର୍ମଚାରୀମାନଙ୍କ ସ୍ୱାସ୍ଥ୍ୟର ସୁରକ୍ଷା ପାଇଁ କୌଣସି ସ୍ୱତନ୍ତ୍ର ଚିକିତ୍ସା-ଭତ୍ତା ଦେବା ଦୂରେ

ଥାଉ ସେମାନଙ୍କ ପ୍ରତି ପ୍ରାଦେଶିକ ସରକାର ବରଂ ଉଦାସୀନ । ବୃଦ୍ଧ ବରିଷ୍ଠ ନାଗରିକମାନଙ୍କର ଜ୍ଞାନ ଓ ଅଭିଜ୍ଞତାକୁ ବିଚାରକୁ ନେଇ ସେମାନଙ୍କୁ "ଅମୂଲ୍ୟ ଜାତୀୟ ମାନବ ସମ୍ବଳ" ଭାବେ ବିବେଚନା କରିବା ଦୂରେ ଥାଉ, ବରଂ ସେମାନେ ସମାଜରେ ଓ ସରକାରୀସ୍ତରରେ ବହୁଳଭାବରେ ଉପେକ୍ଷିତ । ମୋ ମତରେ, ପ୍ରତ୍ୟେକ ରାଜ୍ୟ ରସକାର, ଜରାଗ୍ରସ୍ତ ବୃଦ୍ଧମାନଙ୍କ ସାମାଜିକ ସୁରକ୍ଷା ପାଇଁ, ସ୍ୱତନ୍ତ୍ର ଆଇନ୍ ପ୍ରଣୟନ କରିବା ଉଚିତ । ସୁଖର କଥା, ଭାରତରେ ମାତ୍ର ଦୁଇଟି ପ୍ରଦେଶ, ମହାରାଷ୍ଟ୍ର ଓ ହିମାଚଳପ୍ରଦେଶ ବୃଦ୍ଧମାନଙ୍କ ସୁରକ୍ଷା ପାଇଁ ସ୍ୱତନ୍ତ୍ର ଆଇନ୍ ପ୍ରଣୟନ କରିଛନ୍ତି । ଅତ୍ୟଧିକ ରୋଗବ୍ୟାଧିର ଶିକାର ହୋଇ ପଡୁଥିବା ବୃଦ୍ଧ ପିତାମାତାଙ୍କ ପୁତ୍ରକନ୍ୟାମାନେ ଅବହେଳା କରି ପାରିବେ ନାହିଁ । ଏହା ହିଁ ଉପରୋକ୍ତ ସ୍ୱତନ୍ତ୍ର ଆଇନ୍‌ର ମୂଳ ଲକ୍ଷ୍ୟ ହେବା ଉଚିତ । ଅନେକ କ୍ଷେତ୍ରରେ ଭାରତର ଉଚ୍ଚ ଶିକ୍ଷିତ ପୁତ୍ର, କନ୍ୟାମାନେ, ବୃଦ୍ଧ ପିତାମାତାଙ୍କୁ ଭାରତରେ ଛାଡ଼ିଦେଇ, ବିଦେଶକୁ ଚାଲି ଯାଉଛନ୍ତି ଯାହା ଫଳରେ, ସେମାନେ ଶାରୀରିକ ଓ ଆର୍ଥିକ ଓ ମାନସିକ ଦୁଃଖ ଯନ୍ତ୍ରଣା ପ୍ରତି ଉଦାସୀନ ରହୁଛନ୍ତି । (ସମାଜ ତତ୍ତ୍ୱବିଦ୍‌ମାନେ, ଏହି ପ୍ରକାର ସାମାଜିକ ଦୁଃସ୍ଥିତିକୁ P.I.C.A syndrome ରୂପେ ଆଖ୍ୟାୟିତ କରିଛନ୍ତି । ଏହି P.I.C.A ଅର୍ଥ "Parents in India, Childres Aborad" ଭାରତର ସମ୍ଭ୍ରାନ୍ତ ଉଚ୍ଚଶିକ୍ଷିତ ପରିବାର ପୁତ୍ରକନ୍ୟାମାନଙ୍କ ଉଚ୍ଚଶିକ୍ଷା ପାଇବା ପରେ, ଅଧିକ ଅର୍ଥ ଉପାର୍ଜନ ଓ ବିଳାସ ବ୍ୟସନରେ ଚଳିବା ପାଇଁ ସୁଦୂର ଆମେରିକା, ଇଂଲଣ୍ଡ ଓ ଜର୍ମାନ ଦେଶରେ ରହି ଚାକିରି କରିବାକୁ ଆଗ୍ରହୀ । କିନ୍ତୁ ଦୁଃଖର କଥା ପାଶ୍ଚାତ୍ୟ ସଭ୍ୟତାର ଚାକଚକ୍ୟରେ ଭାସିଯାଇ ଭାରତରେ ରହିଥିବା ବୃଦ୍ଧ ପିତାମାନଙ୍କ ଦୁଃଖ, ବୁଝିବାକୁ ସେମାନଙ୍କ ସମୟ ନାହିଁ । ଅନେକ ହତଭାଗ୍ୟ ପିତାମାତାମାନେ ଭୋଗବାଦୀ ଏହି ସବୁ ଉଚ୍ଚଶିକ୍ଷିତ ପୁତ୍ରକନ୍ୟାମାନଙ୍କର ନିର୍ଦ୍ଦୟତା ଓ କ୍ରୂରତାର ଶିକାର ହୋଇ ମାନସିକ ଯନ୍ତ୍ରଣା ଭୋଗ କରୁଛନ୍ତି । ସେମାନଙ୍କ ନିଃସଙ୍ଗତା, ସେମାନଙ୍କୁ ଜୀବନ ପ୍ରତି ବୀତସ୍ପୃହ କରି ପକାଉଛି । ଏହି ସବୁ ଘଟଣା ଆମ ଓଡ଼ିଶାର ପ୍ରତ୍ୟେକ ସହରରେ ରହୁଥିବା ବୃଦ୍ଧ ପିତାମାତାଙ୍କ ଜୀବନରେ ମଧ ଘଟୁଛି । ଏହା ଏକ ପ୍ରକାର ସାମାଜିକ ବ୍ୟାଧି ଯାହାକୁ ଆମେ ଜେନେରେସନ୍ ଗ୍ୟାପ୍ ବୋଲି କହିଥାଉ । ଏ ସମ୍ପର୍କରେ, ସ୍କୁଲ, ବିଶ୍ୱବିଦ୍ୟାଳୟ ଓ ଆଲୋଚନା ଚକ୍ରରେ ଅଧିକ ଚର୍ଚ୍ଚା ହେବା ଉଚିତ ଏବଂ ଏ ପ୍ରକାର ସାମାଜିକ ବ୍ୟାଧିକୁ ଦୂର କରିବାପାଇଁ ପ୍ରତ୍ୟେକ ନାଗରିକ ଚେଷ୍ଟା କରିବା ଉଚିତ ।

**ଆର୍ଥିକ ସମସ୍ୟା :**

ଅବସରପ୍ରାପ୍ତ ସରକାରୀ ଓ ବେସରକାରୀ ଶିକ୍ଷକ କର୍ମଚାରୀମାନେ କୌଣସି ପ୍ରକାରେ, ସେମାନଙ୍କର ସଞ୍ଚିତ ଅର୍ଥ ଓ ପେନ୍‌ସନ୍ ଦ୍ୱାରା ଯେନତେନ ପ୍ରକାରଣେ

ଗୁଜରାଣ ମେଣ୍ଟାଉଛନ୍ତି ସତ କିନ୍ତୁ ଭାରତର ଗ୍ରାମାଞ୍ଚଳରେ ରହୁଥିବା ଅଗଣିତ, ସମ୍ବଳ ବିହୀନ ଦରିଦ୍ର ପରିବାରର ବୃଦ୍ଧ, ବୃଦ୍ଧାମାନଙ୍କର ଆର୍ଥିକ ଅବସ୍ଥା ଏତେ ଦୟନୀୟ ଯେ, ସେମାନେ ଅତି ଦୁଃଖରେ କାଳତିପାତ କରୁଛନ୍ତି । ଯେଉଁ କେତେକ ବୃଦ୍ଧ ବୃଦ୍ଧାମାନେ ସରକାରୀ ବାର୍ଦ୍ଧକ୍ୟଭତ୍ତା ପାଉଛନ୍ତି ତାହା ଅତି ସାମାନ୍ୟ । ତାହା ସୁସ୍ଥ ଜୀବନ ଯାପନ କରିବା ପାଇଁ ନିଅଣ୍ଟ । ମାସକୁ ଏକ ଶହ ଟଙ୍କା ବାର୍ଦ୍ଧକ୍ୟ ଭତ୍ତା ଗରିବ, ଅସହାୟ, ବୃଦ୍ଧ ବୃଦ୍ଧାମାନଙ୍କ ପ୍ରତି ଉପହାସ ଛଡ଼ା କିଛି ନୁହଁ । ଭାରତର ପ୍ରମୁଖ ତୀର୍ଥସ୍ଥଳୀ, ପୁରୀ, ବନାରସ ଓ ଦ୍ୱାରକା ପ୍ରଭୃତିରେ ବସବାସ କରୁଥିବା ଅସହାୟ ଅନାଥିନୀ ବିଧବା ଓ ଅବହେଳିତ ବୃଦ୍ଧମାନଙ୍କର ଦୃଶ୍ୟ ଦେଖିଲେ–ଭାରତର ବୃଦ୍ଧବୃଦ୍ଧାମାନଙ୍କ ଆର୍ଥିକ ଓ ମାନସିକ ଦୁର୍ଗତି ଓ ନିଃସଙ୍ଗତାକୁ ସମ୍ୟକ ଭାବେ ହୃଦୟଙ୍ଗମ କରିହେବ । ଭାରତର ସାମାଜିକ ବ୍ୟବସ୍ଥାରେ କେତେ ଯେ କ୍ରୁରତା ଭରି ରହିଛି – ଏହି ପ୍ରକାର କରୁଣ–ଜୀବନଚିତ୍ର ତା'ର ମୂକସାକ୍ଷୀ ।

**ବାସପୋଯୋଗୀ – ଗୃହ– ସମସ୍ୟା :**

ଭାରତରେ ଏମିତି ଅନେକ ବୃଦ୍ଧ – ବୃଦ୍ଧା ନାଗରିକମାନେ ଅଛନ୍ତି ଯେଉଁମାନେ ପରିବାର ଦ୍ୱାରା ପରିତ୍ୟକ୍ତ ଓ ଯେଉଁମାନଙ୍କର ଆର୍ଥିକ ଅବସ୍ଥା ଶୋଚନୀୟ, ସେମାନଙ୍କ ପାଇଁ ବାସପୋଯୋଗୀ ଗୃହ ନାହିଁ । ଯଦିବା ଅନେକ ବୃଦ୍ଧ ବୃଦ୍ଧାମାନଙ୍କ ଗୃହ ରହିଛି କିନ୍ତୁ ସେମାନଙ୍କ ଜୀବନର ନିଃସଙ୍ଗତା ଓ ସେମାନଙ୍କର ସ୍ୱାସ୍ଥ୍ୟର ସୁରକ୍ଷା ପାଇଁ ଏକ ସୁସ୍ଥ ଆତ୍ମିକ ସାମାଜିକ ପରିବେଶ ନାହିଁ । ଏହି ସମସ୍ୟାର ପ୍ରତିକାର ପାଇଁ ଅସହାୟ ବୃଦ୍ଧ ବୃଦ୍ଧାମାନଙ୍କ ଉଦ୍ଦେଶ୍ୟରେ **ଜରା–ନିବାସ** ଯୋଜନା, କାର୍ଯ୍ୟକାରୀ କରାଯାଉଛି ଏହାକୁ ଆମେ ଇଂରାଜୀରେ OLD-AGE HOME କହୁଛୁ । ସରକାରୀ ଓ ବେସରକାରୀ ସଂଗଠନ ଗୁଡ଼ିକ ଏହି ଯୋଜନାକୁ ସୁଚାରୁ ରୂପେ କାର୍ଯ୍ୟକାରୀ କରି ପାରି ନାହାଁନ୍ତି । ସରକାରୀ ପୃଷ୍ଠପୋଷକତା ଓ ସାମାଜିକ ସଂଗଠନ ଗୁଡ଼ିକର ନିଷ୍କ୍ରିୟତା ଯୋଗୁଁ ଜରାନିବାସ ଯୋଜନା କେବଳ କାଗଜ କଲମରେ ଓ ସଭା ସମିତିରେ ଆଲୋଚ୍ୟ ବିଷୟ ହୋଇ ରହିଛି । ଭାରତର ପ୍ରାୟ ୧୦ କୋଟି ବୃଦ୍ଧ ବୃଦ୍ଧାମାନଙ୍କ ମଧ୍ୟରୁ କେବଳ ୧୫୭୦୦ ବୃଦ୍ଧମାନଙ୍କ ପାଇଁ ୩୫୬ଟି ଜରାନିବାସ ନିର୍ମିତ ହୋଇଅଛି । ତେଣୁ ଭାରତ ଭଳି ସମସ୍ୟା ଜର୍ଜରିତ ବୃଦ୍ଧବୃଦ୍ଧାମାନଙ୍କ ବାସଗୃହର ଆବଶ୍ୟକତା ତୁଳନାରେ–ଏହ ଜରାନିବାସର ସଂଖ୍ୟା ଅତି ନଗଣ୍ୟ । ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟ ହେଉଛି – ଏହି ଜରାନିବାସର ପରିବେଶ ଆତ୍ମିକ ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ହେବା ଉଚିତ । ଏହି ଜରାନିବାସ ଗୁଡ଼ିକ ବୃଦ୍ଧମାନଙ୍କ ଶାରୀରିକ ସ୍ୱାଚ୍ଛନ୍ଦ୍ୟ ଦେଖିବା ସଙ୍ଗେସଙ୍ଗେ ସେମାନଙ୍କ ମାନସିକ ଶାନ୍ତି ଓ ଭାବଗତ ସଂହତିର ବିକାଶ ପାଇଁ ସହାୟକ ହେବା ଉଚିତ । ତା' ନ ହେଲେ

ଏହି ଜରାନିବାସ ଗୁଡ଼ିକ Old Fashioned mental hospital ରୂପେ ପରିଣତ ହେବ । ପାଶ୍ଚାତ୍ୟ ଦେଶରେ ପ୍ରତିଷ୍ଠିତ ହୋଇଥିବା ଜରାନିବାସ ଗୁଡ଼ିକରେ ବୃଦ୍ଧମାନେ ଅନେକ ସମୟରେ ଅଭିଯୋଗ କରିଛନ୍ତି ଯେ, ସେମାନଙ୍କ ଚିନ୍ତା, ଚେତନା ଓ ଭାବନା ଏହି ଜରା ନିବାସରେ ଶୁଷ୍କ ଓ ନିଷ୍କ୍ରିୟ(Frozen) ହୋଇ ପଡୁଛି । ତେଣୁ ଭାରତରେ ଜରାନିବାସ କେନ୍ଦ୍ରଗୁଡ଼ିକ ଏପରି ଭାବରେ ନିର୍ମିତ ହେବା ଉଚିତ ଯେ, ସେ ସ୍ଥାନର ପରିବେଶ ମଧ୍ୟରେ ଏକ ପାରିବାରିକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସୃଷ୍ଟି ହୋଇପାରିବ ।

**ବୃଦ୍ଧାବସ୍ଥାରେ ନିଃସଙ୍ଗତା :**

ଏହି ବିଶ୍ୱ ଯୁଗରେ ଶିଳ୍ପ ବିକାଶ ସଙ୍ଗେସଙ୍ଗେ, ଭୋଗ୍ୟ ସାମଗ୍ରୀର ଦ୍ରୁତ ପ୍ରସାର ଫଳରେ, କି ସହର, କି ଗ୍ରାମାଞ୍ଚଳ, ସବୁଠି ଅଧିକ ଭୋଗ ବିଳାସରେ ରହିବା ପାଇଁ ନାଗରିକମାନଙ୍କ ମଧ୍ୟରେ ଏକ ପ୍ରକାର ପ୍ରତିଯୋଗିତା ଆରମ୍ଭ ହୋଇଯାଇଛି । ଦ୍ରୁତ ସାମାଜିକ ମୂଲ୍ୟବୋଧର ଅବକ୍ଷୟ ହେତୁ, ପୂର୍ବପରି ପିତାମାତାଙ୍କ ପ୍ରତି ଭକ୍ତି ଓ ସମ୍ମାନ ହ୍ରାସ ପାଉଛି । ବ୍ୟାସକବି ଫକୀର ମୋହନଙ୍କ ଲିଖିତ 'ଡାକ୍‌ମୁନ୍‌ସୀ' ଗଳ୍ପରେ ବର୍ଣ୍ଣିତ, ପୁଅ ଦ୍ୱାରା ବାପାଙ୍କୁ ଇଂରାଜୀ ଘୁସି ମାରିବା ଦୃଶ୍ୟ ଏବେ ବି ଅନେକ ପରିବାରରେ ଘଟୁଛି । ଭାରତରେ ଯୁକ୍ତ ପରିବାର(Joint Family) ଗୁଡ଼ିକ ଭାଙ୍ଗି ଯାଉଛି । ପୁଅମାନେ ଚାକିରି କରିବାକୁ ଚାଲିଯାଉଛନ୍ତି ଦୂର ସହରକୁ ଏବଂ ଝିଅମାନେ ବିବାହ ହୋଇ ଶାଶୁଘରକୁ ଚାଲିଗଲା ପରେ, ବିଚରା ବୁଢ଼ା ବାପମାନେ ଏକାଏକା ଘରେ ରହୁଛନ୍ତି । ପାରିବାରିକ ସୁଖଶାନ୍ତିରୁ ସେମାନେ ବଞ୍ଚିତ ହେଉଛନ୍ତି । ଅନେକ କ୍ଷେତ୍ରରେ ଉପାର୍ଜନକ୍ଷମ ପୁଅମାନେ ସହରରେ ସୁଖଶାନ୍ତିରେ ରହୁଛନ୍ତି । ବାପାମାଆଙ୍କ ସୁଖଦୁଃଖ କଥା ବୁଝୁ ନାହାନ୍ତି । ରୋଗ, ଆର୍ଥିକ ଅନାଟନ ଓ ସାମାଜିକ ପ୍ରତିକୂଳ ପରିବେଶ ମଧ୍ୟରେ ଅନେକ ବୃଦ୍ଧବୃଦ୍ଧାମାନଙ୍କ ଜୀବନର ଅପରାହ୍ଣରେ ସେମାନଙ୍କ ମୁହଁରେ ହସ କ୍ୱଚିତ୍ ଦେଖିବାକୁ ମିଳେ । ଜଣେ ଅଙ୍ଗେ ନିଭାଇଥିବା ଲେଖକ ଗୋଟିଏ ଇଂରାଜୀ ପତ୍ରିକାର ଏକ କ୍ଷୁଦ୍ର ନିବନ୍ଧରେ ବୃଦ୍ଧମାନଙ୍କ ଜୀବନର ନିଃସଙ୍ଗତାକୁ ଅତି ମର୍ମସ୍ପର୍ଶୀ ଭାବରେ ବର୍ଣ୍ଣନା କରି ଲେଖିଛନ୍ତି – "They sit alone or talk to themselves for houses as they have none to share their thoughts with. In the sun down years of life, they became mute as an EMBALMED PHAROH, Memories bitter and sweet, crown in and sleep eludes them."

ଏହି ନିଃସଙ୍ଗତାରୁ ମୁକ୍ତି ପାଇବା ପାଇଁ ଏବେ ମୁମ୍ବାଇ, କଲିକତା ଓ ଦିଲ୍ଲୀ ସହରମାନଙ୍କରେ, ବୃଦ୍ଧ ନାଗରିକମାନେ ହାସ୍ୟ-ସମିତି(Laughter Club)ଗଠନ

କରି ପ୍ରତିଦିନ ସକାଳ ଓ ସନ୍ଧ୍ୟାରେ ଏକ ପାର୍କ ବା କ୍ଲବରେ ପରସ୍ପର ହସଖୁସିରେ କିଛି ସମୟ କଟାଉଛନ୍ତି । ତେଣୁ ବୃଦ୍ଧାବସ୍ଥାରେ, ନିଃସଙ୍ଗତା, ବିଷର୍ଣ୍ଣତା, ଭୟ ଓ ମାନସିକ ଉଦ୍‌ବେଗରୁ ମୁକ୍ତି ପାଇଁ (୧) ଯୋଗ, (୨) ଧାର୍ମିକ ସଭାସମିତିରେ ଯୋଗଦାନ, (୩) ସମାଜ-କଲ୍ୟାଣମୂଳକ ସଂଗଠନରେ ଯୋଗଦାନ କରି ନିଜ ନିଜକୁ କର୍ମଚଞ୍ଚଳ କରିବା ଉଚିତ ବୋଲି ସମାଜତତ୍ତ୍ୱବିଦ୍‌ମାନଙ୍କ ପରାମର୍ଶ । ଶ୍ରୀମଦ୍ ଭଗବତର ସାଂଖ୍ୟଯୋଗରେ ଭଗବାନ, ଶ୍ରୀକୃଷ୍ଣ, ତାଙ୍କ ପ୍ରିୟ ଶିଷ୍ୟ ଅର୍ଜ୍ଜୁନଙ୍କୁ ମୋହମାୟାରୁ ମୁକ୍ତ ହୋଇ, ଅନ୍ୟାୟ ଓ ଅନୀତି ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ପ୍ରେରଣା ଦେଇଛନ୍ତି ଓ ଯୁଦ୍ଧରେ ବୀର ଯୋଦ୍ଧାଭଳି ଅବତୀର୍ଣ୍ଣ ହେବାପାଇଁ ଉପଦେଶ ଦେଇଛନ୍ତି । ସାଂଖ୍ୟଯୋଗର ଶ୍ଳୋକରେ ଶ୍ରୀକୃଷ୍ଣଙ୍କ ଉପଦେଶ ହେଉଛି -

**'କୈବଲ୍ୟଂ ମା ସ୍ମ ଗମଃ ପାର୍ଥ ନେତତ୍ତ୍ୱ ଯ୍ୟୁପଦ୍ୟତେ**
**କ୍ଷୁଦ୍ରଂ ହୃଦୟାଦୌର୍ବଲମ, ତ୍ୟକ୍ତ୍ୱୋତିଷ୍ଠ ପରନ୍ତପ ।**

(୨/୩)

ଅର୍ଥାତ୍, ହେ ଅର୍ଜୁନ ନପୁଂସକତାକୁ ପରିତ୍ୟାଗ କର । ତୁମଠାରେ ଏହା ଶୋଭା ପାଏନା । ହେ ପରନ୍ତପ ! ହୃଦୟର ଆତ୍ମାରୁ ଦୁର୍ବଳତାକୁ ତ୍ୟାଗ କରି, ତୁମେ ଏହି ଯୁଦ୍ଧ କରିବା ପାଇଁ ଠିଆ ହୁଅ ।

ଜୀବନର ବୃଦ୍ଧାବସ୍ଥାରେ ମଣିଷ ଯେତେବେଳେ, ଶୋକାଭିଭୂତ ନିଃସଙ୍ଗ ଓ କିଂକର୍ତ୍ତବ୍ୟ ବିମୂଢ଼ ହୋଇଉଠେ, ସେତେବେଳେ ସେ ଭାବିବା ଉଚିତ ଯେ, ଜୀବନ ହିଁ ଏକ ଯୁଦ୍ଧଭୂମି । ଏଠାରେ ଭୟ, ଶୋକ, ନପୁଂସକତାକୁ ପରିତ୍ୟାଗ କରି, ସର୍ବଦା ଚିର ଚଞ୍ଚଳ ଓ କର୍ମଠ ହେବା ଉଚିତ । ଅତ୍ୟଧିକ ଆସକ୍ତିକୁ ପରିତ୍ୟାଗ କରି, ସ୍ଥିତପ୍ରଜ୍ଞ ପରି, ବାନପ୍ରସ୍ଥ ଜୀବନ-ଯାପନ କରିବାର ଅଭ୍ୟାସ କଲେ ଆଧାତ୍ମିକ ଚେତନାର ଅଭିବୃଦ୍ଧି ସଙ୍ଗେସଙ୍ଗେ, ନିଃସଙ୍ଗତାକୁ ମୁକ୍ତି ପାଇ ମାନସିକ ଶାନ୍ତି ମିଳିପାରିବ ।

ତେଣୁ ଶ୍ରୀମଦ୍ ଭଗବଦ୍ ଗୀତା ସାଂଖ୍ୟଯୋଗର ୫୬ ଶ୍ଳୋକରେ ବର୍ଣ୍ଣିତ ଶ୍ରୀକୃଷ୍ଣଙ୍କ ଉପଦେଶ ପ୍ରଣିଧାନ ଯୋଗ୍ୟ । ବରିଷ୍ଠ ନାଗରିକମାନେ ଭାରତୀୟ ଦର୍ଶନର ଏହି ମୂଳମନ୍ତ୍ରକୁ ବୁଝିବା ଉଚିତ ।

**ଦୁଃଖେଷ୍ୱ ଉଦ୍‌ବିଘ୍ନମନାଃ, ସୁଖେଷ୍ୱ ବିଗତ ସ୍ପୃହଃ**
**ବୀତରାଗ ଭୟ କ୍ରୋଧଃ ସ୍ଥିତଧୀମୁନିରୁଚ୍ୟତେ ।**

**(୨/ ୫୬)**



# ଭାରତୀୟ ଜାତିପ୍ରଥା : ଏକ ସମୀକ୍ଷା

ଆଜି ସାମାଜିକ ସଂଗଠନର ମୂଳଭିତ୍ତି ଜାତିପ୍ରଥା ଉପରେ ପର୍ଯ୍ୟବେଶିତ । ହିନ୍ଦୁ ସମାଜ ପ୍ରାଚୀନ କାଳରୁ ବହୁଗୋଷ୍ଠୀ ବା ସମ୍ପ୍ରଦାୟ ଦ୍ୱାରା ବିଭକ୍ତ । ଏହି ଗୋଷ୍ଠୀଗୁଡ଼ିକର ସମଷ୍ଟିରେ ଗୋଟିଏ ଗୋଟିଏ ସମ୍ପ୍ରଦାୟ ଗଢ଼ି ଉଠିଛି । ସଂସ୍କୃତରେ ଗୋଷ୍ଠୀକୁ ଗୋତ୍ର ଏବଂ ବହୁ ଗୋତ୍ରର ସମଷ୍ଟିକୁ ସଂସ୍କୃତ ଭାଷାରେ ଜାତି କୁହାଯାଏ । ଛାନ୍ଦୋଗ୍ୟ ଉପନିଷଦରୁ ପ୍ରମାଣ ମିଳେ ଯେ, ଏହି ବଂଶ ଓ ଗୋତ୍ର ଔପନିଷଦ ଯୁଗରୁ ପ୍ରଚଳିତ ହୋଇଆସିଛି ।

**ଜବଲା ଓ ସତ୍ୟକାମ –**

ଜବଳାଙ୍କ ପୁତ୍ର ସତ୍ୟକାମ ଥରେ ତାଙ୍କର ଜନନୀଙ୍କୁ ପ୍ରଶ୍ନ କରିଥିଲେ, ''ବ୍ରହ୍ମଚର୍ଯ୍ୟଂ ଭବତି ବିବତ୍‌ସ୍ୟାମିକିଂ ଗୋତ୍ରାନ୍ୱହ ସ୍ମିତି'' ଅର୍ଥାତ୍ ମୁଁ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରି ଗୁରୁ ଗୃହରେ ବସବାସ କରିବାକୁ ଇଚ୍ଛା କରୁଅଛି । ସୁତରାଂ କୁହ ମୁଁ କେଉଁ ଗୋତ୍ରରେ ଜନ୍ମ ଗ୍ରହଣ କରିଅଛି ।

କଶ୍ୟପ, ବଶିଷ୍ଠ, ବିଶ୍ୱାମିତ୍ର, ଭରଦ୍ୱାଜ, ଗୌତମ, ଶାଣ୍ଡିଲ୍ୟ ପ୍ରତ୍ୟେକ ଗୋଟିଏ ଗୋଟିଏ ଗୋଷ୍ଠୀର ଅଧିପତି । ହିନ୍ଦୁ ଧର୍ମାଭିଭୁକ୍ତ ପ୍ରତ୍ୟେକ ଜାତି ଓ ଗୋତ୍ରରେ ଜନ୍ମ ହୋଇଥିବା ବ୍ୟକ୍ତି ନିଜର ସ୍ୱଧର୍ମ ପାଳନ କରିବା ଉଚିତ । କାରଣ ସେହି ସ୍ୱଧର୍ମ ପାଳନ କରିବାରେ ସାମାଜିକ ସଂଗଠନ ସୁଦୃଢ଼ ହେବ । ହିନ୍ଦୁ ସମାଜର ଜାତିପ୍ରଥା ଗୁଣ ଓ କର୍ମ ଅନୁସାରେ ବିଭିନ୍ନ ସଂପ୍ରଦାୟରେ ବିଭକ୍ତ କରାଯାଇଅଛି । ଏହାକୁ ଶ୍ରମମର୍ଯ୍ୟାଦା ସକାଶେ ଶ୍ରମ ବିଭାଗ ବା ଯାହାକୁ ଇଂରାଜୀରେ Division of labour to dignity of labour କୁହାଯାଇପାରେ ।

ଗୀତା –

ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି–

**''ଚାତୁର୍ବର୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ ''** ।

(ଗୀତା୪–୧୩)

ବ୍ରାହ୍ମଣ ଜାତିର ସ୍ୱଧର୍ମ ହେଉଛି – ସମ, ଦମ, ତପସ୍ୟା, ପବିତ୍ରତା, କ୍ଷମା, ସରଳତା ଓ ଜ୍ଞାନ । କ୍ଷତ୍ରିୟର ସ୍ୱଧର୍ମ ହେଉଛି – କର୍ମଦକ୍ଷତା, ଯୁଦ୍ଧ ଓ ଲୋକ–ଶାସନ । ବୈଶ୍ୟର ସ୍ୱଧର୍ମ–କୃଷି, ଗୋପାଳନ, ବାଣିଜ୍ୟ । ଶିଳ୍ପକାର୍ଯ୍ୟ ଓ ଉଚ୍ଚତର ଜାତିର ସେବା ହିଁ ଶୁଦ୍ରର କର୍ତ୍ତବ୍ୟ ।

ବିଭିନ୍ନ ଜାତିର ଧର୍ମ ଓ ସ୍ୱଭାବ ସମ୍ବନ୍ଧରେ ଶ୍ରୀମଦ୍ ଭଗବଦ୍ ଗୀତାର ଅଷ୍ଟାଦଶ ଅଧ୍ୟାୟରେ ଏକ ବିଷଦ ବର୍ଣ୍ଣନା ରହିଛି । ଯଥା–

**''ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୁଦ୍ରାଣଞ୍ଚ ପରନ୍ତପ**
**କର୍ମାଣି ପ୍ରବିଭକ୍ତାନି ସ୍ୱଭାବ ପ୍ରଭବୈର୍ଗୁଣୈଃ**
**ଶମୋ ଦମସ୍ତପଃ ଶୌଚଃ କ୍ଷାନ୍ତି ରାର୍ଜ୍ଜବ ମେବଚ**
**ଜ୍ଞାନଂ ବିଜ୍ଞାନମାସ୍ତିକ୍ୟଂ ବ୍ରହ୍ମକର୍ମ ସ୍ୱଭାବଜମ୍**
**ଶୌର୍ଯ୍ୟଂତେଜୋ ଧୃତିର୍ଦାକ୍ଷଂ ଯଦ୍ଧେଚାପ୍ୟପଲାୟନଂ**
**ଦାନମୀଶ୍ୱରଂ ଭାବଶ୍ଚ ଯାତ୍ରଂ କର୍ମଂ ସ୍ୱଭାବଜମ୍–**
**କୃଷି ଗୌରକ୍ଷ୍ୟ ବାଣିଜ୍ୟ ବୈଶ୍ୟକର୍ମ ସ୍ୱଭାବଜାମ୍**
**ପରିଚର୍ଯ୍ୟାତ୍ମକଂ କର୍ମ ଶୁଦ୍ରସ୍ୟାପି ସ୍ୱଭାବଜମ୍ ।''**

(ଗୀତା–୧୮/ ୪୧–୪୪)

ଏହି ପ୍ରକାର ଶ୍ରମ ବିଭାଗ ଅନୁସାରେ ହିନ୍ଦୁ ସମାଜରେ ଜାତିପ୍ରଥା ବୈଦିକ ଯୁଗରୁ ପ୍ରଚଳିତ ହୋଇ ଆସିଛି । ଏହି ପ୍ରଥାର ପ୍ରାରମ୍ଭ ଅନୁସାରେ ଅନ୍ୟ ଜଣେ ଏକ ଉଚ୍ଚତର ଶ୍ରେଣୀରେ ଅନ୍ତର୍ଭୁକ୍ତ ହୋଇ ସମ୍ମାନିତ ହୋଇ ପାରୁଥିଲେ ।

**କୁସଂସ୍କାର :**

ବର୍ତ୍ତମାନ ଏହି ଜାତିପ୍ରଥାର କୁସଂସ୍କାର ହେଉଛି ଏୟା ଯେ, ଏହା ଏକ ପ୍ରକାର ବଂଶଜାତ ତଥା ଏକ ଅପରିବର୍ତ୍ତନୀୟ ପ୍ରଥା ହୋଇ ଉଠିଛି । ଉଦାହରଣ ସ୍ୱରୂପ ଜଣେ ମତ୍ସ୍ୟଜୀବୀ ଏହି ସମାଜରେ ସାର୍ବଜନୀନ ଶିବ କିମ୍ବା କୌଣସି ଦେବୀ ପୂଜାର ଅଧିକାରୀ ହୋଇପାରିବ ନାହିଁ । ଯେହେତୁ ସେ ମତ୍ସ୍ୟଜୀବୀ ଗୃହରେ ଜନ୍ମଗ୍ରହଣ କରିଛି, ଯଦିବା ତାହାର ବେଦ ଓ ବ୍ରହ୍ମସୂତ୍ର, ସ୍ମୃତି ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଥାଇପାରେ କିନ୍ତୁ ବୈଦିକ ଯୁଗରେ, ବିଶିଷ୍ଟ ଜଣେ ଗଣିକାର ପୁତ୍ର ହୋଇ ମଧ ହଜାର ହଜାର ବ୍ରାହ୍ମଣର ଗୁରୁ ହୋଇ ମନ୍ତ୍ରଦୀକ୍ଷା ଦେଇ ପାରୁଥିଲେ । ଆଜି ଜଣେ ରଜକାର କନ୍ୟା ବିଦୁଷୀ ହୋଇଥିଲେ ମଧ ଉଚ୍ଚ ବ୍ରାହ୍ମଣ ବା ଉଚ୍ଚ ଅଭିଜାତ ଶ୍ରେଣୀର ପରିବାର ତାଙ୍କୁ କୁଳବଧୂ କରି ନେବାକୁ ପ୍ରଥମେ କୁଣ୍ଠାବୋଧ କରିବେ । ସେମାନଙ୍କର ଭୟ ଯେ, ଏତଦ୍ୱାରା ସେମାନଙ୍କର ସାମାଜିକ ସମ୍ମାନରେ ଆଞ୍ଚ ଆସିବ । ତେଣୁ ଆଜି ସଭ୍ୟ ସମାଜରେ ଏ ପ୍ରକାର

ବୈବାହିକ ସମ୍ପର୍କ ସ୍ଥାପନ ସ୍ୱତଃସ୍ଫୁର୍ତ୍ତ ଭାବରେ ଅନୁମୋଦିତ ହୋଇପାରି ନାହିଁ । ଯଦିବା Civil Marriage ୧୯୫୭ ମସିହାଠାରୁ ଏହା ଆଇନ୍ ଦ୍ୱାରା ଅନୁମୋଦିତ ହୋଇଛି ।

କିନ୍ତୁ ବୈଦିକ ଯୁଗରେ ଏ ପ୍ରକାର intercaste ବିବାହର ପ୍ରଚଳନର ବହୁ ଉଦାହରଣ ରହିଛି, ଯଥା ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀ ସହିତ କ୍ଷତ୍ରିୟ ରାଜା ଯଯାତିଙ୍କ ବିବାହ । ଏହାର ବିଶଦ ଉଦାହରଣ-ମହାଭାରତର ଆଦିପର୍ବରେ ରହିଛି । ହିନ୍ଦୁ ଧର୍ମରେ ଏହାକୁ ''ପ୍ରତିଲୋମ ବିବାହ'' ବୋଲି କୁହାଯାଏ । ଏପରିକି ନୀଚ ଜାତିର ଲୋକମାନେ ବହୁ ସମ୍ମାନରେ ଭୂଷିତ ହେଉଥିଲେ ଓ ସେମାନଙ୍କ ମଧ୍ୟରେ ବହୁ ଜ୍ଞାନୀ ଓ ଦାର୍ଶନିକ ମଧ୍ୟ ଥିଲେ । ମହାଭାରତର ବିଦୂର ଜଣେ ଶୁଦ୍ରର ପୁତ୍ର ଥିଲେ । କିନ୍ତୁ ସେହି ମହାଭାରତର ଆଦିପର୍ବରେ ବିଦୁରଙ୍କୁ ଧର୍ମର ପ୍ରତିମୂର୍ତ୍ତି ବୋଲି କୁହାଯାଇଛି । ସେହିପରି ବ୍ୟାସଦେବ ଜଣେ ଧୀବର କନ୍ୟାର ପୁତ୍ର ଓ ପରାଶର ଜଣେ ଚଣ୍ଡାଳର ପୁତ୍ର ଥିଲେ । ପୁରାଣରେ ପ୍ରମାଣ ରହିଛି ଯେ, ଜାତିପ୍ରଥା, ବଂଶଗତ ଜନ୍ମଦ୍ୱାରା ସଂଗଠିତ ନୁହେଁ । ତାହା ଗୁଣ ଓ କର୍ମ ଅନୁସାରେ ବିଭକ୍ତ ହୋଇଥିଲା । ଯୁଧିଷ୍ଠିର 'ବ୍ରାହ୍ମଣ'ର ସଂଜ୍ଞା ଓ ପରିଚୟ ଦେବାକୁ ଯାଇ କହିଛନ୍ତି-ସତ୍ୟ ଓ କ୍ଷମା ଗୁଣରେ ଭୂଷିତ ହୋଇଥିବା ବ୍ୟକ୍ତି ହିଁ କେବଳ ବ୍ରାହ୍ମଣ ଅଟେ । କେବଳ ବ୍ରାହ୍ମଣ ପରିବାର ମଧ୍ୟରେ ଜନ୍ମ ହେଲେ ଜଣେ ବ୍ରାହ୍ମଣ ହୋଇପାରେନା । ମହାଭାରତର ବନପର୍ବର ୧୮୦ ଶ୍ଳୋକରେ ଧର୍ମବୀର ଯୁଧିଷ୍ଠିରଙ୍କ ଏହି ଚିନ୍ତାଧାରା ପ୍ରଣିଧାନ ଯୋଗ୍ୟ ।

**ଭୃଗୁଙ୍କ ଯୁକ୍ତି :**

ଥରେ ଭରଦ୍ୱାଜ ମୁନି ଭୃଗୁଙ୍କୁ ପ୍ରଶ୍ନ କଲେ ଯେ, ଏହି ଚାରିବର୍ଣ୍ଣ ଅନୁସାରେ ଚାରି ଜାତିର ବିଭାଗ ହେଲା, ତେବେ ପ୍ରତ୍ୟେକ ଜାତି ମଧ୍ୟରେ ଏତେ ବର୍ଣ୍ଣବିଭାଗ କିପରି ଦେଖାଯାଏ ? କାମ, କ୍ରୋଧ, ଭୟ, ଲୋଭ, ଶୋକ, କ୍ଷୁଧା ଓ କ୍ଳାନ୍ତି ଯଦି ସମସ୍ତ ପ୍ରାଣୀ ଉପରେ ସମାନ ଭାବରେ ପ୍ରଭାବ ପକାଇଥାଏ, ତେବେ ସ୍ୱଭାବ ଅନୁସାରେ ଏହି ଜାତି ବିଭାଗର ସାର୍ଥକଣ କେଉଁଠି ? ଭାରତର ଶାନ୍ତିପର୍ବରେ ଭୃଗୁ ତାହାର ଉତ୍ତରରେ କହିଛନ୍ତି -

ନ ବିଶେଷୋଦ୍ଧସ୍ତି ବର୍ଣ୍ଣନଂ ସର୍ବଂବ୍ରହ୍ମମିଦଂ ଜଗତ୍
ବ୍ରହ୍ମା ପୂର୍ବ ସୃଷ୍ଟଂ ହି କର୍ମଣା ବର୍ଣ୍ଣତାଂ ଗତମ୍ ।
ବାମ ଯୋଗ ପ୍ରିୟା ସ୍ରକ୍ଷାଃ କ୍ରୋଧେନାପ୍ରିୟ ସାହସଃ
ତ୍ୟକ୍ତ ସ୍ୱଧର୍ମା ରକ୍ତାଙ୍ଗରେ ଦ୍ୱିଜ, ଯନ୍ତ୍ରଣଂ ଗତଃ
ଗ୍ୟାଭ୍ୟୋ ବୃତ୍ତିଂ ସମାସ୍ଥାୟ ପୀତାଃ କୃଷ୍ୟପଜୀବିନଃ
ସ୍ୱଧର୍ମାନ୍ନନୂତିଷ୍ୟନ୍ତି ତେ ଦ୍ୱିଜା ବୈଶ୍ୟତାଂ ଗତଃ

**ହିଂସାନୃତ ପ୍ରିୟାଃ କ୍ଷୁବ୍ଧାଃ ସର୍ବକର୍ମୋପଜୀବିନଃ**
**କୃଷ୍ଣା ଶୌଚ ପରିଭ୍ରଷ୍ଟାସ୍ତେ ଦ୍ୱିଜା ଶୁଦ୍ରତାଂ ଗତଃ**
**ଇତ୍ୟେତୈଃ କର୍ମଭିଷ୍ଟା ଦ୍ୱିଜା ବର୍ଣ୍ଣାନ୍ତରଂ ଗତଃ**
**କର୍ମଯଜ୍ଞକ୍ରିୟା ତେଷାଂ ନିତ୍ୟଂ ନ ପ୍ରତିଷେଧତେ ।**

(ମହାଭାରତ, ଶାନ୍ତିପର୍ବ ୧୧୮/୧୦-୧୪)

ବୁଦ୍ଧଦେବ ପ୍ରଥମେ ଏହି ଜନ୍ମଗତ ବିଧି ଅନୁସାରେ ଜାତିପ୍ରଥା ବିରୁଦ୍ଧରେ ପ୍ରଚାର କରିଥିଲେ । କୌଣସି ବ୍ୟକ୍ତି ବ୍ରାହ୍ମଣ ବଂଶରେ ଜନ୍ମ ହୋଇଥିଲେ ମଧ ସେ ବ୍ରାହ୍ମଣର ମର୍ଯ୍ୟାଦା ପାଉନଥିଲା । ଯେ କୌଣସି ବଂଶର ଲୋକଙ୍କ ମଧରେ ସଂଯମ, ପବିତ୍ରତା ଓ ସତ୍ୟନିଷ୍ଠା ପ୍ରଭୃତି ବ୍ରାହ୍ମଣୋଚିତ ଗୁଣମାନ ଥିଲେ ବୁଦ୍ଧଦେବ ତାକୁ ବ୍ରାହ୍ମଣ ବୋଲି ସ୍ୱୀକାର କରୁଥିଲେ ।

ଧମ୍ମପଦରେ ବୁଦ୍ଧଦେବଙ୍କ ଏହି ଚିନ୍ତାଧାରା ପ୍ରକାଶିତ ହୋଇଛି ଯଥା –

**‘‘ଯସସ କାୟେନ ବାଚାୟ ମନସାନଥି ଦୁକ୍କତଂ**
**ସଂବୁତଃ ପୀହି, ଠାନେହି ତମହଂ ବ୍ରୁମି ବ୍ରାହ୍ମଣ**
**ନ ଜଟହି, ନ ଗୋତ୍ତେନ ନାଜଂଗହୋତି ବ୍ରାହ୍ମଣ**
**ଯମହି, ସତଂ ଚ ଧମ୍ମୋ ଚାସ ସୁଖୀ ଚ ବ୍ରାହ୍ମଣ ।’’**

(ଧର୍ମପଦ ୨୬ ଅ.ବ୍ରାହ୍ମଣ-୯-୧୧)

ଅର୍ଥାତ୍ ଯାହାର କାୟ, ବାକ୍ୟ ଏବଂ ମନରେ ପାପ ମନୋଭାବ ନାହିଁ, ଯେ ଏହି ତିନି ବିଷୟରେ ସଂଯତ, ତାକୁ ମୁଁ ବ୍ରାହ୍ମଣ କହିବି । ଗୋତ୍ର ଅଥବା ଜାତି ଦ୍ୱାରା କେହି ବ୍ରାହ୍ମଣ ହୋଇପାରେନା । କିନ୍ତୁ ଯାହାଠାରେ ସତ୍ୟ ଧର୍ମ ରହିଛି, ସିଏ ହେଉଛି କେବଳ ସୁଖୀ ଓ ବ୍ରାହ୍ମଣ ।

ଏହି ଜାତିପ୍ରଥାର କୁସଂସ୍କାର ବିରୁଦ୍ଧରେ ପ୍ରଥମେ ବୌଦ୍ଧ ଯୁଗରେ ଖ୍ରୀଷ୍ଟପୂର୍ବ ଷଷ୍ଠ ଶାତବ୍ଦୀରୁ ଆଲୋଚନା ଓ ଆଲୋଡ଼ନ ସୃଷ୍ଟି ହୋଇ ଆସୁଛି । ବିଭିନ୍ନ ବୈଷ୍ଣବ ସମ୍ପ୍ରଦାୟ ଷଷ୍ଠ ଓ ଅଷ୍ଟମ ଶତାବ୍ଦୀରେ ଏବଂ ଦକ୍ଷିଣ ଭାରତରେ ଦ୍ୱାଦଶ ଶତାବ୍ଦୀରେ ରାମାନୁଜ ପନ୍ଥୀମାନେ ସମସ୍ତେ ଏହି ଜାତିପ୍ରଥା ବିରୁଦ୍ଧରେ ପ୍ରଚାର କରିଥିଲେ । ସେମାନଙ୍କର ଯୁକ୍ତିଥିଲା- ସମସ୍ତେ ଏକ ଈଶ୍ୱରର ସନ୍ତାନ । ତେଣୁ ସମସ୍ତେ ଏକ ଜାତିର ଅନ୍ତର୍ଭୁକ୍ତ । ସମାଜ ବହୁ ଜାତିରେ ବିଭକ୍ତ ହେବା ଏକ ଅଧାର୍ମିକ ପନ୍ଥା ‘ଭବିଷ୍ୟ ପୁରାଣ’ର ବ୍ରହ୍ମପର୍ବରେ ରହିଛି ଯେ- ଚାରି ଜାତିର ସନ୍ତାନମାନେ ଭଗବାନଙ୍କ ସନ୍ତାନ । ତେଣୁ ସେମାନେ ଭଗବାନଙ୍କର ସବୁ ସନ୍ତାନ । ଏକ ଜାତିର ଏକ ପିତାର ପୁତ୍ରମାନେ ବିଭିନ୍ନ ଜାତିର ହୋଇ ନ ପାରନ୍ତି ।

ହିନ୍ଦୁ ଧର୍ମରେ ଏହି ଜାତିପ୍ରଥା କର୍ମ ଓ ଗୁଣ ଅନୁସାରେ ସଂଗଠିତ ହୋଇଥିଲେ ମଧ୍ୟ ସମାଜରେ ଏହା କାଳକ୍ରମେ ତିକ୍ତ ଭେଦଭାବ ଓ କୁସଂସ୍କାର ସୃଷ୍ଟି କରିଥିଲା । ଫଳରେ ସମାଜରେ ଅନୈକ୍ୟ ଓ ଅସାମ୍ୟ ବୃଦ୍ଧି ପାଇଥିଲା । ସମାଜରେ ବିଭିନ୍ନ ଜାତି ଓ ଉପଜାତି ମଧ୍ୟରେ ବୈବାହିକ ସମ୍ପର୍କ ସୀମିତ ଓ ଜଟିଳ ହୋଇଉଠିଲା । ଏହି କାରଣରୁ ପବିତ୍ର ହିନ୍ଦୁ ସମାଜରେ ଅସ୍ପୃଶ୍ୟତା ଯୌତୁକ ପ୍ରଥା ପ୍ରଭୃତି କୁସଂସ୍କାର ସୃଷ୍ଟି ହେଲା ଓ ସାମାଜିକ ଅଶାନ୍ତି ବୃଦ୍ଧି ପାଇଲା ।

**ଜାତିଭେଦର ପରିଣାମ :**

ସ୍ୱାଧୀନ ଭାରତରେ ଗାନ୍ଧିଜୀଙ୍କ ଆଦର୍ଶ ଓ ପ୍ରଭାବ ଫଳରେ ଜାତି ପ୍ରଥାରେ ଅସ୍ପୃଶ୍ୟତା କ୍ରମେ କ୍ରମେ ଦୂରୀଭୂତ ହୋଇ ଆସୁଛି ଏବଂ ଯୌତୁକ ପ୍ରଥା ବିରୁଦ୍ଧରେ ଆଇନ୍ ପ୍ରଚଳନ ହେଲାଣି । ତଥାପି ବହୁ ଶିକ୍ଷିତ ଓ ଅଶିକ୍ଷିତ ଲୋକଙ୍କ ମଧ୍ୟରେ ଏହି କୁସଂସ୍କାର ସଂପୂର୍ଣ୍ଣ ଭାବେ ଦୂରୀଭୂତ ହୋଇନାହିଁ । ବିଭିନ୍ନ ଜାତି ଉପଜାତି ମଧ୍ୟରେ ଜାତିଗତ ଭେଦଭାବ ଜନିତ ହିଂସା, ବିଦ୍ୱେଷ ସଂପୂର୍ଣ୍ଣ ଭାବରେ ଦୂରୀଭୂତ ହୋଇ ନାହିଁ । ଏହି ଜାତିପ୍ରଥାର ବିଭିନ୍ନ କୁସଂସ୍କାର ଗୁଡ଼ିକ ହିନ୍ଦୁ ଧର୍ମର ଆଦର୍ଶର ପରିପନ୍ଥୀ । କ୍ଷିତିମୋହନ ସେନ୍ ତାଙ୍କର Hinduism ନାମକ ପୁସ୍ତକରେ ଲେଖିଛନ୍ତି –

"Indeed caste divssions as they exist today are very much against basic Hindu doctrine of all pervading Brahman."

ସାର୍ ମନିଅର୍ ଉଇଲିୟମ୍ ଲେଖିଛନ୍ତି ଯେ, ହିନ୍ଦୁର ଏହି ସମସ୍ତ ଜାତି ବିଭାଗ ଓ ବିଭିନ୍ନ ସଂପ୍ରଦାୟ ମଧ୍ୟରେ ବିରୋଧ ଥିବା ଯୋଗୁଁ ଅତୀତରେ ଅନେକ ସମୟରେ ରାଷ୍ଟ୍ରୀୟ ଐକ୍ୟ ଅସମ୍ଭବ ହୋଇ ପଡ଼ିଥିଲା ଏବଂ ଭାରତର ଏହି ଅନୈକ୍ୟ ବିଭିନ୍ନ ସମୟରେ ବ୍ରିଟିଶ ଶାସନ ପାଇଁ ସହାୟକ ହୋଇଥିଲା ।

ଆଜି ସ୍ୱାଧୀନ ଭାରତରେ ସାମାଜିକ ବୈଷମ୍ୟକୁ ଦୂର କରି, ରାଷ୍ଟ୍ରୀୟ ଐକ୍ୟ ଓ ସଂହତିସଂପନ୍ନ ମନୋଭାବ ସୃଷ୍ଟି କରିବା ପ୍ରତ୍ୟେକ ନାଗରିକର ପ୍ରଧାନ କର୍ତ୍ତବ୍ୟ ।

ବିଶିଷ୍ଟ ଲେଖକ Luis Mumford ଲେଖିଛନ୍ତି ଯେ, ସାମାଜିକ ଅସହଯୋଗିତା ଦ୍ୱିତୀୟ ମହାସମର ସଂଘଟିତ ହେବାର ଏକ ମୁଖ୍ୟ କାରଣ ।

ଆଜି ଭାରତର ସେହି ବେଦାନ୍ତ ଧର୍ମର ସାମ୍ୟ, ମୈତ୍ରୀ, ତ୍ୟାଗ, ନୀତିରେ ଭାରତୀୟ ସମାଜକୁ ପୁନର୍ଗଠନ କରିବାକୁ ହେବ ଏବଂ ଭାରତୀୟ ସମାଜକୁ ଉନ୍ନତ ଓ ପ୍ରଗତିଶୀଳ କରିବା ପାଇଁ ପ୍ରତ୍ୟେକଙ୍କ ମନରୁ "ଜାତିଭେଦ" ଭଳି କୁସଂସ୍କାରକୁ ଦୂର କରିବାକୁ ହେବ । ସାମାଜିକ କୁସଂସ୍କାରଗୁଡ଼ିକ ଦୂର କରି ପାରିଲେ ଭାରତର ଐକ୍ୟ ଓ ରାଷ୍ଟ୍ରୀୟ ସଂହତି ପ୍ରତିଷ୍ଠା ସମ୍ଭବ ହୋଇପାରିବ ଏବଂ ଭାରତର ମହାନ୍ ସଂସ୍କୃତିର ବିକାଶ ହୋଇପାରିବ ।

■■■

# ଯୁଗେ ଯୁଗେ ସମାଜରେ ଶ୍ରେଣୀ–ବୈଷମ୍ୟ : ଏକ ସମୀକ୍ଷା

ସମାଜର ବିଭିନ୍ନ ଶ୍ରେଣୀ ମଧ୍ୟରେ ଯେଉଁ ଅର୍ଥନୈତିକ ଓ ସାମାଜିକ ବୈଷମ୍ୟ ରହିଛି – ତାହାକୁ ହିଁ ଶ୍ରେଣୀ ବୈଷମ୍ୟ କୁହାଯାଏ । ମାନବ ଇତିହାସର ପ୍ରାଗ୍–ଐତିହାସିକ ଯୁଗରୁ ଆଜି ବିଂଶ ଶତାବ୍ଦୀ ମଧ୍ୟରେ ସମାଜରେ କେତେ ପ୍ରକାର ବିପ୍ଳବ ଆରମ୍ଭ ହୋଇଛି, କେତେଥର ରାଜମୁକୁଟ ଭୂ–ଲୁଣ୍ଠିତ ହୋଇଛି–କେତେ ସ୍ୱୈରାଚାରୀ ଶାସକର ପତନ ହୋଇଛି–କେତେ ଦୁର୍ଗ, କେତେ ରାଜଧାନୀ ଭସ୍ମିଭୂତ ହୋଇଛି ଓ କେତେ ଜମିଦାର ଓ ବେରନମାନଙ୍କୁ ହତ୍ୟା କରାଯାଇଛି । ଏ ସମସ୍ତ ପ୍ରକାର ବିପ୍ଳବର ମୂଳକାରଣ ହେଉଛି – ଏହି ଶ୍ରେଣୀ ବୈଷମ୍ୟ । ବ୍ୟକ୍ତିଗତ ଓ ସାମାଜିକ ନିରାପତ୍ତା ସକାଶେ, ସଂହତି ଓ ଶାନ୍ତିରେ ଜୀବନ ଯାପନ କରିବାର କାମନା ମଣିଷର ଏକ ଆଦିମ ସାମାଜିକ ପ୍ରବୃତ୍ତି ।

ବିଭିନ୍ନ ସଭ୍ୟତାର ଉତ୍‌ଥାନ ଓ ପତନ ମଧ୍ୟରେ ମଣିଷ ସମାଜର ବିବର୍ତ୍ତନ ଘଟିଛି । ସମାଜରେ ଆତ୍ମ–ଅଧିକାର, ପଦ ମର୍ଯ୍ୟାଦା ଓ ସମ୍ପତ୍ତି –ସମ୍ଭୋଗ ଲାଳସା ପ୍ରଭୃତି ବିଭିନ୍ନ ପ୍ରବୃତ୍ତି ଯେତେବେଳେ ଉତ୍କଟ ଆକାର ଧାରଣ କରି ସାମାଜିକ ସଂହତି ଓ ମୈତ୍ରୀକୁ ବ୍ୟାହତ କରିଛି, ସେତେବେଳେ ସମାଜରେ ବିଭିନ୍ନ ପ୍ରକାର ବୈଷମ୍ୟ ଦେଖାଦେଇଛି ଏବଂ ସାମାଜିକ ବିପ୍ଳବ ସେତେବେଳେ ଅବଶ୍ୟମ୍ଭାବୀ ହୋଇଉଠିଛି । ସଭ୍ୟତାର ସଙ୍କଟବେଳେ, ବିପ୍ଳବର ପ୍ରାରମ୍ଭରେ କେତେକ ସଂଖ୍ୟାଲଘୁ ବୁଦ୍ଧିଜୀବୀ ସମସ୍ତ ପ୍ରକାର ସାମାଜିକ ଓ ଅର୍ଥନୈତିକ ଅନ୍ୟାୟ ଓ ଶୋଷଣ ବିରୁଦ୍ଧରେ ଜନମତକୁ ପ୍ରଭାବିତ କରି 'ନୂତନ ସାମାଜିକ ଚେତନା'(a new social consciousnees)ସୃଷ୍ଟି କରନ୍ତି । ଫଳରେ ପୁରାତନ ସଭ୍ୟତାର ମୂଲ୍ୟବୋଧ, ସାମାଜିକ ଜୀବନ ଧାରା ଓ ସର୍ବୋପରି ଇତିହାସର ଗତି ବଦଳିଯାଏ । ମାନବ ସଭ୍ୟତା ଏକ ସାଂସ୍କୃତିକ ସଙ୍କଟରୁ ଉଦ୍ଧାର ପାଏ ।

ଆଜି ବିଂଶଯୁଗରେ ସମାଜରୁ ସମସ୍ତ ପ୍ରକାର ଅନ୍ୟାୟ ଓ ଶୋଷଣ ଲୋପ କରି, ସଭ୍ୟତାକୁ ଏକ ଧ୍ୱଂସୋନ୍ମୁଖୀ ଅଧୋଗତିରୁ ଉଦ୍ଧାର କରିବା ପାଇଁ ଏହି ସଂଖ୍ୟାଲଘୁ ମୁଷ୍ଟିମେୟ ସୃଜନଶୀଳ ପ୍ରତିଭାର ଉନ୍ମେଷ ଅତ୍ୟନ୍ତ ଜରୁରୀ ହୋଇପଡ଼ିଛି । ବିଖ୍ୟାତ ଐତିହାସିକ ଟଏନବି (Toynbee)ତାଙ୍କର ପୁସ୍ତକ "Philisophy of History"ରେ ସଭ୍ୟତାର ପତନ ଓ ତାହାର କାରଣ ସମ୍ବନ୍ଧରେ ଦର୍ଶାଇଛନ୍ତି ଯେ, ସମାଜରେ ସୃଜନଶୀଳ, ମୁଷ୍ଟିମେୟ ଗୋଷ୍ଠୀ (Creative minority)ର 'ଉଦାସୀନତା' ସମଗ୍ର ଜନତା ମଧ୍ୟରେ ସାମାଜିକ ଅନୁରକ୍ତି ଓ ସାମାଜିକ ଐକ୍ୟ (Social unity)ର ଅଭାବ ହିଁ ସଭ୍ୟତାର ପତନ ଓ ସଙ୍କଟର ମୂଳକାରଣ । ପ୍ରତ୍ୟେକ ସଭ୍ୟତାର (Civilisation) ସଙ୍କଟର ପୂର୍ବାବସ୍ଥାରେ ସମାଜରେ ପ୍ରଥମେ ଦେଖାଦିଏ–ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ... । ଏହି ଶ୍ରେଣୀ ବୈଷମ୍ୟ ଅତି ଉତ୍କଟ ଆକାର ଧାରଣ କରିଥିବା ଯୋଗୁଁ ଫ୍ରାନ୍ସ ବିପ୍ଳବ ଓ ଋଷ ବିପ୍ଳବ ସଂଘଟିତ ହୋଇଥିଲା ।

ପ୍ରତ୍ୟେକ ସମାଜ ସଂଗଠନର ମୂଳ ଉଦ୍ଦେଶ୍ୟ ସମାଜରେ ସମସ୍ତ ନାଗରିକମାନେ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସାମାଜିକ ଅଧିକାର ଉପଭୋଗ କରିବେ ଓ ସମସ୍ତେ ଶାନ୍ତି, ମୈତ୍ରୀ ଓ ସାମ୍ୟ ଭାବରେ ଏକତ୍ର ସହାବସ୍ଥାନ କରିବେ । ଏହି ପ୍ରକାର ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ସମାଜ ସଂସ୍କାରକ, ବୁଦ୍ଧିଜୀବୀମାନେ ଆଦର୍ଶ ସମାଜ ପ୍ରତିଷ୍ଠାର ନେତୃତ୍ୱ ନିଅନ୍ତି । କିନ୍ତୁ ଆଜି ଏହି ବିଂଶଯୁଗରେ କି ପ୍ରାଚ୍ୟ, କି ପାଶ୍ଚାତ୍ୟ ଦେଶରେ ଏହି ନେତୃତ୍ୱର ଘୋର ଅଭାବ ପରିଲକ୍ଷିତ ହେଉଛି । ଫଳରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସମାଜରେ ଅନୈକ୍ୟ ଓ ସାମାଜିକ ତଥା ଅର୍ଥନୈତିକ ଶ୍ରେଣୀ ବୈଷମ୍ୟ ଅତି ଗୁରୁତର ରୂପ ଧାରଣ କରିଛି । ଆଧୁନିକ ଅନେକ ଦେଶର ସମାଜରେ ଅହରହ ବିଶୃଙ୍ଖଳା ଓ ଅସନ୍ତୋଷର ବହ୍ନି ପ୍ରଜ୍ୱଳିତ ହେଉଛି । ଧର୍ମଗତ(religious) ଓ ବର୍ଣ୍ଣଗତ (Racial) ବିଦ୍ୱେଷ ଆଜି ମଧ୍ୟ ଆମେରିକା ଭଳି ଉନ୍ନତ ସମୃଦ୍ଧିଶାଳୀ ରାଜ୍ୟ ଓ ଇଂଲଣ୍ଡ ଭଳି ତଥାକଥିତ ସୁଶାସିତ ଶିକ୍ଷିତ ସଭ୍ୟ ରାଜ୍ୟରେ ଅଶାନ୍ତି ଓ ଗୋଷ୍ଠୀ ବିବାଦ ସୃଷ୍ଟି କରୁଛି । ଫଳରେ ହିଂସାତ୍ମକ ଘଟଣାମାନ ସମାଜର ଏକ ନିତ୍ୟ ନୈମିତ୍ତିକ ଘଟଣାରେ ପରିଣତ ହୋଇଛି । ସେହିପରି ଭାରତରେ ଏକ ଦିଗରେ ସାମ୍ପ୍ରଦାୟିକତା(Communalism) ଅନ୍ୟ ଦିଗରେ ଅର୍ଥନୈତିକ ଓ ସାମାଜିକ ଶ୍ରେଣୀ ବୈଷମ୍ୟ, ଜାତୀୟ ସଂହତି ଓ ଐକ୍ୟବଦ୍ଧ ଜୀବନକୁ ବ୍ୟାହତ କରୁଛି । କେତେକ ପ୍ରଦେଶରେ ସନ୍ତ୍ରାସବାଦ ଓ ଉଗ୍ର ହିଂସାତ୍ମକ ଘଟଣାଗୁଡ଼ିକ, ସମଗ୍ର ସାମାଜିକ ଜୀବନକୁ ବିପନ୍ନ ଓ ମୁମୂର୍ଷୁ କରି ପକାଉଛି । ଏହି ପରିପ୍ରେକ୍ଷୀରେ ଆଜି ସମାଜରେ ଏକ ନୂତନ ସମାଜ ସଚେତନଶୀଳତା (A new social consciousness) ସୃଷ୍ଟି ପାଇଁ ସମାଜର ଅର୍ଥନୈତିକ ବୈଷମ୍ୟର ସ୍ୱରୂପ ଆଲୋଚନା

ଓ ପର୍ଯ୍ୟାଲୋଚନା ଏକ ଅତ୍ୟାବଶ୍ୟକ କର୍ତ୍ତବ୍ୟ ବୋଲି ପ୍ରତ୍ୟେକ ଲେଖକ ଓ ପାଠକ ମଧ୍ୟ ହୃଦୟଙ୍ଗମ କରିବା ଉଚିତ । ଆମେ ଆଜି ଏହି ପ୍ରକାର ସମାଜ-ସଚେତନତା ସୃଷ୍ଟି କରି ନ ପାରିଲେ ସମାଜ,ସଭ୍ୟତା ତଥା ସଂସ୍କୃତିର ଅଧୋଗତିକୁ କେହି ବନ୍ଦ କରିପାରିବେ ନାହିଁ । ପ୍ରଖ୍ୟାତ ସମାଜ ତତ୍ତ୍ୱବିତ୍ ପ୍ରିଟିମ୍ ସରୋକିନ୍(|Pritim Sorokin) ତାଙ୍କର ବିଖ୍ୟାତ ପୁସ୍ତକରେ ଏ ବିଷୟରେ ଲେଖିଛନ୍ତି – "The cultre eminently declines and crumbles, because, it deviates from the purpose of tasks that were born at its creative phase."(Social Philosophy in Age of Crisis-P-143)

ସାମାଜିକ ନ୍ୟାୟ, ସାମ୍ୟ ଓ ମୈତ୍ରୀର ବିକାଶ ଉପରେ ସମାଜର ପ୍ରଗତି ନିର୍ଭର କରେ । ଯେଉଁ ସମାଜରେ ଅନ୍ୟାୟ, ବୈଷମ୍ୟ ଓ ଅନୈକ୍ୟ ବୃଦ୍ଧି ପାଏ, ସେ ସମାଜରେ ଦିନେ ନା ଦିନେ ବିପ୍ଳବର ବହ୍ନି ଜଳିଉଠେ । ତେଣୁ ସାମାଜିକ ସଙ୍କଟରୁ ଉଦ୍ଧାର ପାଇବାକୁ ହେଲେ, ସମାଜର ଶ୍ରେଣୀ ବୈଷମ୍ୟ ଦୂର କରିବା ଏକାନ୍ତ ପ୍ରୟୋଜନ, ନଚେତ୍ ସଭ୍ୟତାର ଧ୍ୱଂସ ଅବଶ୍ୟମ୍ଭାବୀ । ଏହି ଆସନ୍ନ ଧ୍ୱଂସ ମୁଖରୁ ସମାଜକୁ ଉଦ୍ଧାର କରିବାର ଗୁରୁଦାୟିତ୍ୱ ଆଜି ଆମ ସମସ୍ତଙ୍କର ।



# ଭାରତୀୟ ଚଳଚ୍ଚିତ୍ରର ବିକାଶ

ଚଳଚିତ୍ର ଆଧୁନିକ ସମାଜର ସୁଖଶାନ୍ତି ଓ ଆମୋଦ ପ୍ରମୋଦର ଏକ ଉନ୍ନତ ମାଧ୍ୟମ ହୋଇଉଠିଛି । ଏହା କଳା ସଂସ୍କୃତି ତଥା ସମାଜର ବାସ୍ତବ ପ୍ରତିଚ୍ଛବିର ରୂପରେଖ ଦେବା ସଙ୍ଗେସଙ୍ଗେ ଆଧୁନିକ କର୍ମକ୍ଳାନ୍ତ ଜୀବନକୁ ବିପୁଳ ଆନନ୍ଦ ଓ ନୂତନ ଦୂରଦୃଷ୍ଟି ଦେଇପାରୁଛି । ଆଧୁନିକ ସମସ୍ୟାମୟ ଜୀବନରେ ଏହାର ପ୍ରଭାବ ସୁଦୂରପ୍ରସାରୀ ଏବଂ ଏହାର ଭବିଷ୍ୟତ ବିକାଶ ଉଜ୍ଜ୍ୱଳ ।

ଭାରତୀୟ ଚଳଚିତ୍ରର ବିକାଶ ଏହି ବିଂଶଯୁଗର ପ୍ରଥମାର୍ଦ୍ଧରେ ସମ୍ଭବ ହୋଇଛି । ଏହାର ବ୍ୟାପକ ପ୍ରସାର ଓ ଗୌରବ ଏହି ଶିଳ୍ପକୁ ସମୃଦ୍ଧିଶାଳୀ କରିଛି ଓ ଦୂର ଦେଶରେ ମଧ୍ୟ ଭାରତୀୟ ଚଳଚିତ୍ରର ପ୍ରଭାବ ବୃଦ୍ଧି ପାଇଛି ।

ଭାରତୀୟ ଚଳଚିତ୍ରର କ୍ରମିକ ବିକାଶ ସମ୍ବନ୍ଧରେ ଆଲୋଚନା କଲାବେଳେ ଏହାର ଇତିହାସ ହିଁ ପ୍ରଥମେ ବିଚାର୍ଯ୍ୟ । ୧୯୧୨ ମସିହାରେ ପ୍ରଥମେ ଦାଦା ସାହେବ ଫାଲକେଙ୍କର ପ୍ରଥମ "ହରିଶ୍ଚନ୍ଦ୍ର" ନାମକ ଚଳଚିତ୍ର ମୁକ୍ତିଲାଭ କରେ । ତା'ପରେ Imperial Film Co. ଦ୍ୱାରା Ahamara ନାମକ ଅନ୍ୟ ଏକ ନିର୍ବାକ ଚଳଚ୍ଚିତ୍ର ନିର୍ମିତ ହୋଇଥିଲା । କ୍ରମେକ୍ରମେ ଚଳଚିତ୍ରର ପ୍ରସାର ଦ୍ରୁତତର ହୋଇଉଠେ । ୧୯୩୫ ମସିହାଠାରୁ ଭାରତୀୟ ଚଳଚିତ୍ରର ବିକାଶ ଉନ୍ନତତର ହୋଇଉଠେ । ଆଜି ଏହାର ପ୍ରଗତି କଥା, ଚିନ୍ତା କଲେ ମନରେ ବିପୁଳ ଆନନ୍ଦ ଆସେ । ପୃଥିବୀର ବିଭିନ୍ନ ଦେଶର ଚଳଚିତ୍ର ଶିଳ୍ପ ପ୍ରତିଯୋଗିତାରେ, ଭାରତର ସ୍ଥାନ ଦ୍ୱିତୀୟ । ପ୍ରତିବର୍ଷ ବମ୍ବେ, କଲିକତା ଓ ମାନ୍ଦ୍ରାଜ ଏହି ତିନୋଟି ସହରରୁ ୨୫୦ ରୁ ୨୮୦ ଯାଏ ସିନେମା ଚିତ୍ର, ବିଭିନ୍ନ ପ୍ରେକ୍ଷାଳୟରେ ମୁକ୍ତିଲାଭ କରୁଛି । ଏହି ଚଳଚିତ୍ର ଶିଳ୍ପରେ ପ୍ରାୟ ସତୁରି ହଜାର କଳାକାରମାନେ କାମ କରୁଛନ୍ତି । ବହୁ ଅଭିନେତା ଓ ଅଭିନେତ୍ରୀଙ୍କର କଳାନୈପୁଣ୍ୟ ଓ ପ୍ରାୟ ଛଅଶହ ଚିତ୍ର ନିର୍ମାତାଙ୍କ କର୍ମ ଦକ୍ଷତାରେ ଏହି ଶିଳ୍ପ ଦିନକୁ ଦିନ ସମୃଦ୍ଧିଶାଳୀ ହୋଇଉଠୁଛି । କେବଳ ବ୍ୟକ୍ତିଗତ ପ୍ରଚେଷ୍ଟା ଓ ଉଦ୍ୟମ ଏହି ଶିଳ୍ପର ଉନ୍ନତିର ଏକମାତ୍ର

କାରଣ ନୁହେଁ । ଭାରତ ସରକାର ମଧ ଏହାର ବ୍ୟାପକ ପ୍ରସାର ଓ ପ୍ରଭାବ ପାଇଁ ଯତ୍ନଶୀଳ । କାରଣ ଆଧୁନିକ ସମାଜ ଉପରେ ଏହାର ପ୍ରସାର ସୁଦୂରପ୍ରସାରୀ । ଭାରତୀୟ ସମାଜରେ ଏହା ଏକ ଆମୋଦ-ପ୍ରମୋଦର ତଥା ଶିକ୍ଷାର ଏକ ଉନ୍ନତ ମାଧ୍ୟମ ହୋଇପାରିଛି । ଭାରତରେ ଆଜି ପ୍ରାୟ ୩୭୫୦ଟି ପ୍ରେକ୍ଷାଳୟରେ ପ୍ରତିଦିନ ୨୦ ଲକ୍ଷ ଲୋକ ସିନେମା ଦେଖି ଆନନ୍ଦ ପାଇ ପାରୁଛନ୍ତି । ଏଥିପାଇଁ ଭାରତ ସରକାର ଅଭିନେତା ଓ ଅଭିନେତ୍ରୀଙ୍କର କଳାନୈପୁଣ୍ୟକୁ ଉତ୍ସାହିତ କରିବା ପାଇଁ ୧୯୫୪ ମସିହାରେ State Award for Film ଯୋଜନାକୁ କାର୍ଯ୍ୟକାରୀ କଲେ । ଖ୍ୟାତନାମା ଅଭିନେତା ଓ ଅଭିନେତ୍ରୀମାନଙ୍କୁ ସେମାନଙ୍କର ଅଭିନୟ ପ୍ରତିଭା ପାଇଁ ପୁରସ୍କୃତ କରି, ସେମାନଙ୍କ ମନରେ ବିପୁଳ ଉତ୍ସାହ ଓ ପ୍ରେରଣା ଭରି ଦେଇ ଚଳଚ୍ଚିତ୍ର ବିକାଶକୁ ଉନ୍ନତ କରିବାରେ ସଚେଷ୍ଟ ହେଲେ ।

ସମାଜରେ ଉନ୍ନତ ରୁଚିର ଚଳଚ୍ଚିତ୍ର ପ୍ରଦର୍ଶନ ସକାଶେ ଭାରତ ସରକାର Central Board of Film Censors ନାମକ ଏକ ସଂସ୍ଥା ଗଠନ କଲେ ।

୧୯୧୨ ମସିହାରୁ ଆଜିସୁଦ୍ଧା ଶହଶହ ଚଳଚ୍ଚିତ୍ର ଭାରତର ବିଭିନ୍ନ ପ୍ରଦେଶର ସହରମାନଙ୍କରେ ଥିବା ପ୍ରେକ୍ଷାଳୟରେ ମୁକ୍ତିଲାଭ କରିଛି ଏବଂ ଏହି କେତେ ବର୍ଷ ମଧ୍ୟରେ ବହୁ ଉଚ୍ଚକୋଟୀର ଚଳଚ୍ଚିତ୍ର ମଧ ନିର୍ମିତ ହୋଇଛି । କେତେକ ଉଚ୍ଚକୋଟୀର ଚଳଚ୍ଚିତ୍ର କେବଳ ଭାରତୀୟ ଦର୍ଶକମାନଙ୍କୁ ମୁଗ୍ଧ କରି ନାହିଁ, ତାହା ବିଭିନ୍ନ ଦେଶର ଦର୍ଶକ ଓ ସମାଲୋଚକଙ୍କୁ ମଧ ଅଭିଭୂତ କରିଛି । କେତେକ ଉଚ୍ଚ ପ୍ରଶଂସିତ ଭାରତୀୟ ଚଳଚ୍ଚିତ୍ରର ଉନ୍ନତ କଳାନୈପୁଣ୍ୟ ବାସ୍ତବ ଦୃଷ୍ଟିଭଙ୍ଗୀ ସକାଶେ କି ଭାରତୀୟ, କି ବିଦେଶୀୟ ଦର୍ଶକ ସମସ୍ତଙ୍କ ପାଇଁ ଅନାର୍‌କଲି, ଆୱାରା, ଦୋବିଘା ଜମିନ୍, ଝନକ୍ ଝନକ୍ ପାୟଲ ବାଜେ, ବର୍ଷାତ୍, ପତିତା, ଜାଗତି, ଅପୁର ସଂସାର, ଭୁବନସୋମ ଓ ପାଥେରପାଞ୍ଚାଲି, ଜାଗତେ ରହୋ, ଅଦିନ ମେଘ ସ୍ମରଣୀୟ ହୋଇରହିଛି ।

୧୮୫୭ ମସିହାରେ ବହୁତ ଉନ୍ନତ ଓ ଉଚ୍ଚକୋଟୀର ଚିତ୍ର ନିର୍ମିତ ହୋଇଛି । ଏହି ସମୟ ମଧ୍ୟରେ ଭାରତର ବିଭିନ୍ନ ପ୍ରେକ୍ଷାଳୟରେ ୩୫୦ଟି ଚିତ୍ର ମୁକ୍ତି ଲାଭ କରିଛି । ସେଥିରୁ କେତେ ଗୁଡ଼ିଏ ଚିତ୍ର ଏତେ ଉନ୍ନତ ଓ ଏତେ ମର୍ମସ୍ପର୍ଶୀ ହୋଇଛି ଯେ ଏଗୁଡ଼ିକ ଆନ୍ତର୍ଜାତିକ ଚଳଚ୍ଚିତ୍ର ପ୍ରତିଯୋଗିତାରେ ଭାରତକୁ ଗୌରବାନ୍ୱିତ କରି ପାରିଛି । ଏହି ଚିତ୍ରମାନଙ୍କ ମଧ୍ୟରେ ଜାଗତେ ରହୋ ପଥେର ପାଞ୍ଚାଳି, ପତିତା, ଅପରାଜିତା ପ୍ରଭୃତି ଉଲ୍ଲେଖଯୋଗ୍ୟ । ଏଗୁଡ଼ିକ ପୃଥିବୀର ଯେ କୌଣସି ଦେଶର ଉଚ୍ଚକୋଟୀର ଚଳଚ୍ଚିତ୍ର ସହିତ ଯେ ସମକକ୍ଷ ଏଥିରେ ସନ୍ଦେହ ନାହିଁ । ଜାଗତେ ରହୋ ଆଧୁନିକ ସମାଜର ଦୋଷ ଦୁର୍ବଳତାକୁ ନିର୍ଭୁଲ ଭାବରେ ପରିବେଷଣ କରିପାରିଛି । ଏହି ଚିତ୍ରଟି

ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବFarlovy Film Festival ରେ the Grand pix ପୁରସ୍କାର ଲାଭ କରିଛି । ଖ୍ୟାତନାମା ନିର୍ଦ୍ଦେଶକ ସତ୍ୟଜିତ୍ ରାୟଙ୍କ ଦ୍ୱାରା ପରିଚାଳିତ ଓ ବଙ୍ଗଳାର ଖ୍ୟାତନାମା ଔପନ୍ୟାସିକ ବିଭୂତି ବନ୍ଦୋପାଧ୍ୟାୟଙ୍କ ''ପଥେର ପାଞ୍ଚାଲୀ'' ଉପନ୍ୟାସର କଥାବସ୍ତୁକୁ ନେଇ ''ପଥେର ପାଞ୍ଚାଲୀ' ଚଳଚିତ୍ରଟି ଭାରତୀୟ ଗ୍ରାମ୍ୟଜୀବନର କରୁଣାତ୍ମକ ସମସ୍ୟା ଓ ଜୀବନର ଦୁଃଖ ଦାରିଦ୍ର୍ୟ ମଧ୍ୟରେ ଏକ ପରିବାରରର ଜୀବନ କାହାଣୀ ଏତେ ମର୍ମସ୍ପର୍ଶୀ ଭାବରେ ପରିବେଷିତ ହୋଇଛି ଯେ ତାହା ପ୍ରତ୍ୟେକ ଦର୍ଶକକୁ ଗ୍ରାମ୍ୟ ଜୀବନର କରୁଣ, ସ୍ମୃତି ବହୁଳ ଅଭିଜ୍ଞତା କଥା ମନେ ପକାଇ ଦିଏ । ଏହି ଚିତ୍ରଟି ମଧ ସାନଫ୍ରାନ୍‌ସିସ୍କୋ ଫିଲ୍ମ ଉତ୍ସବରେ ଆନ୍ତର୍ଜାତିକ ସମ୍ମାନ ଲାଭ କରିଛି । ୧୯୫୭ ମସିହାରେ ଭେନସରେ ହୋଇଥିବା ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବରେ ଖ୍ୟାତନାମା ନିର୍ଦ୍ଦେଶକ ସତ୍ୟଜିତ୍ ରାୟଙ୍କ ଅପରାଜିତା ଚିତ୍ରଟି The Golden Lion Mark ରୂପେ ସର୍ବୋତ୍କୃଷ୍ଟ ପୁରସ୍କାର ଲାଭ କରି ଉଚ୍ଚ ପ୍ରଶଂସିତ ହୋଇଛି । ଆଜି ତେଣୁ ଭାରତର କେତେକ ଉନ୍ନତ ଚଳଚ୍ଚିତ୍ର ବିଦେଶରେ ବିପୁଳ ଭାବରେ ସମ୍ମାନିତ ଓ ଉଚ୍ଚ ପ୍ରଶଂସିତ । କିନ୍ତୁ ଭାରତରେ ଯେତେ ଚଳଚ୍ଚିତ୍ର ପ୍ରତିବର୍ଷ ନିର୍ମିତ ହେଉଛି, ତା' ତୁଳନାରେ ଏହି କେତେକ ଚଳଚ୍ଚିତ୍ରର ଆନ୍ତର୍ଜାତିକ ଖ୍ୟାତି ଏହି ଶିଳ୍ପର ସାମୂହିକ ଉନ୍ନତିର ପରିଚାୟକ ନୁହେଁ । କେତେକ ସଭ୍ୟ ଦେଶରେ ଏହି ଶିଳ୍ପ ଅର୍ଥ ଉପାର୍ଜନକାରୀ ଏକ ବ୍ୟବସାୟ ହିସାବରେ ହିଁ ପରିଗଣିତ ହୋଇଛି, ଫଳରେ ବିଭିନ୍ନ ପ୍ରକାର ରୁଚି ବିବର୍ଜିତ, ଅଶ୍ଳୀଳ, ନଗ୍ନ ପ୍ରତିଛବି ଅନେକ ଚଳଚ୍ଚିତ୍ରରେ ଦେଖିବାକୁ ମିଳୁଛି । ନାରୀର ନଗ୍ନ ଦେହର ରୂପ ଓ ନୃତ୍ୟଗୀତ ହିଁ କେତେକ ଚଳଚିତ୍ରର ଏକମାତ୍ର ପରିବେଷଣର ବିଷୟବସ୍ତୁ ହୋଇଯାଇଛି । ଇଉରୋପୀୟ ଦେଶମାନଙ୍କରେ ଚିତ୍ର ନିର୍ମାତାମାନେ ବାସ୍ତବତାର ଓ ଜନତାର କାମନାର ଦ୍ୱାହି ଦେଇ ବିପୁଳ ଅର୍ଥ ଉପାର୍ଜନ ସକାଶେ ଶହଶହ ଅଶ୍ଳୀଳ ଚିତ୍ର ନିର୍ମାଣ କରି ଚାଲିଛନ୍ତି । ଏହାକୁ ଆଧୁନିକ ଚିତ୍ର ନିର୍ମାତାମାନେ "New wave" ନାମରେ ନାମିତ କଲେଣି । ଚଳଚ୍ଚିତ୍ର ଜଗତର ଏହି ନଗ୍ନ ଚିନ୍ତାଧାରା ବର୍ତ୍ତମାନ ସାରା ପୃଥିବୀର ଅଗଣିତ ଯୁବ ସଂପ୍ରଦାୟଙ୍କ ମନରେ ଯେଉଁ ଉଚ୍ଛୃଙ୍ଖଳତା ସୃଷ୍ଟି କରୁଛି, ତାହାକୁ କେହି ଅସ୍ୱୀକାର କରିପାରିବେ ନାହିଁ । ଏହାଦ୍ୱାରା କେବଳ ଶିଳ୍ପପତିମାନେ, ଅଭିନେତା ଓ ଅଭିନେତ୍ରୀମାନେ ଅଧିକ ଅର୍ଥ ଉପାର୍ଜନ କରି ବ୍ୟକ୍ତିଗତ ପୁଞ୍ଜି ବଢ଼ାଇବାରେ ଲାଗିଛନ୍ତି । ପାଶ୍ଚାତ୍ୟ ଚଳଚ୍ଚିତ୍ର ଜଗତରେ ଏହି ପ୍ରକାର ବ୍ୟବସାୟୀ ମନୋବୃତ୍ତି – ''ନୂତନ ପ୍ରବାହ'' ନାମରେ ବାସ୍ତବତାର ଦ୍ୱାହି ଦେଇ ଯେଉଁ ନଗ୍ନ ଚିନ୍ତାଧାରା ସମାଜର ନୈତିକ ମାନଦଣ୍ଡକୁ ଅବନତ କରୁଛି, ତାହାର କୁପ୍ରଭାବ ଆଜି ଭାରତୀୟ ଅଧିକାଂଶ ଚିତ୍ର ନିର୍ମାତା,ଅଭିନେତା, ଅଭିନେତ୍ରୀମାନଙ୍କର ଚିନ୍ତାଧାରାକୁ ସଂକ୍ରମିତ କରିଛି ବୋଲି ଏ ଲେଖକର ଏକ ବ୍ୟକ୍ତିଗତ ଧାରଣା ।

କେତେକ ଭାରତୀୟ ଚଳଚିତ୍ରର ନୈତିକ ମାନଦଣ୍ଡ ଓ ସମାଜ ଉପରେ ଏହାର ସୁଦୂରପ୍ରସାରୀ ପ୍ରଭାବ କଥା ଚିନ୍ତା କଲେ ଭାରତୀୟ ଚଳଚ୍ଚିତ୍ରର ଦୋଷ ଦୁର୍ବଳତା ସହଜରେ ଦୃଷ୍ଟିଗୋଚର ହୁଏ । ପ୍ରଥମତଃ ବହୁତ ଚିତ୍ରରେ ଏତେ ଅଧିକ ଶସ୍ତା ସଙ୍ଗୀତ ଓ ନୃତ୍ୟ ପରିବେଷିତ ହୋଇଥାଏ ଯେ ଚିତ୍ରଟି କେବଳ ସଂଗୀତବହୁଳ ହୋଇ ଉଠେ । ତାହା ଚଳଚିତ୍ରର କଳାତ୍ମକ ମୂଲ୍ୟ (artistic value) କୁ ହ୍ରାସ କରେ । ସଙ୍ଗୀତ ଓ ନୃତ୍ୟଗୁଡ଼ିକ ଅନେକ ସମୟରେ ବିଷୟବସ୍ତୁ ତୁଳନାରେ ଅନେକ ସମୟରେ ଅପ୍ରାସଙ୍ଗିକ ହୋଇଉଠେ । ଦ୍ୱିତୀୟରେ ଅଭିନେତା ଓ ଅଭିନେତ୍ରୀମାନଙ୍କର ବହୁ ଭାଷିତା ମଧ ଚଳଚିତ୍ରର କଳାତ୍ମକ ସୌନ୍ଦର୍ଯ୍ୟ ଓ ମହତ୍ତ୍ୱକୁ ନଷ୍ଟ କରେ । ଥରେ ଜଣେ ଚଳଚିତ୍ର ସମାଲୋଚକ ଏହି ବିଷୟରେ ଲେଖିଥିଲେ –

"The acknowledged sin of indian cinema is its verbosity. The most drawback of our movies is exactly, the absence of total human expressiveness that gives cinema its dynamism its specific character.

x x x x

Our screen players only indicate the board situatons and load the characters therein with heavy speeches, therefore as a rule, characters in our movies are tremendous talks and stugy."

ତେଣୁ ଆଜି ଆଧୁନିକ ଭାରତୀୟ ଚଳଚିତ୍ରରେ ଅଧିକ Sex ଓ Violence ଦୃଶ୍ୟ, ସଙ୍ଗୀତ ବହୁଳତା, ଅଶ୍ଳୀଳ ନୃତ୍ୟ ଓ ଚରିତ୍ରର ବହୁ ଭାଷିତା ଦୋଷ, ଉନ୍ନତ ଅଭିନୟର କଳାତ୍ମକ ସୌନ୍ଦର୍ଯ୍ୟକୁ ନଷ୍ଟ କରିବା ସଙ୍ଗେସଙ୍ଗେ ଚଳଚିତ୍ରର ସାମାଜିକ ଆଦର୍ଶ ଓ ଅଙ୍ଗୀକାରକୁ ପଥଭ୍ରଷ୍ଟ କରୁଛି । ଏତଦ୍ ବ୍ୟତୀତ ଚଳଚିତ୍ରର କଥାବସ୍ତୁ ଏତେ ଗତାନୁଗତିକ ଓ ସମୟ ସମୟରେ ଏତେ ଉଦ୍ଭଟ ଓ ଅବାସ୍ତବ ଯେ ତାହାର ପ୍ରଭାବ ଆମ ସମାଜ ଉପରେ ବାସ୍ତବିକ ମଙ୍ଗଳପ୍ରଦ ହୋଇ ପାରୁନାହିଁ । କେତେ ଚଳଚିତ୍ରରେ କଥା ବସ୍ତୁଗୁଡ଼ିକରେ ଏତେ ଯୌନ ଆକର୍ଷଣ(Sex appeal) ଯେ ତାହାର କୁପ୍ରଭାବ ଫଳରେ ଆଧୁନିକ ସମାଜରେ କି ଶିକ୍ଷିତ କି ଅଶିକ୍ଷିତ ଦର୍ଶକର ମନକୁ ବିପଥଗାମୀ କରୁଛି । ଚଳଚିତ୍ରର ନୈତିକ ମାନଦଣ୍ଡ ସମ୍ପର୍କରେ ଚିତ୍ର–ନିର୍ମାତାମାନେ କହନ୍ତି – ଦର୍ଶକ ଯାହା ଚାହେଁ ଆମେ ତାହା ହିଁ ଚଳଚିତ୍ରରେ ଦର୍ଶାଇ ଥାଉଁ କିନ୍ତୁ ମୋର ମନେହୁଏ ଚଳଚିତ୍ର ଆମ ସମାଜ, ଆମ କଳା, ଆମ ସଂସ୍କୃତି ବିକାଶର ଏକ ଉନ୍ନତ ମାଧ୍ୟମ ହିସାବରେ ଏହା କେବଳ ସାଧାରଣ ଲୋକଙ୍କର ଅବଚେତନ ମନରେ ପୁଞ୍ଜିଭୂତ ଅଶ୍ଳୀଳ

କାମନାର ଖୋରାକ ହୋଇ ନପାରେ, ଜନରୁଚିର ପରିବର୍ତ୍ତନ ହିଁ ଏହି ଚଳଚ୍ଚିତ୍ର ମାଧ୍ୟମରେ ସମ୍ଭବ । ମଦ୍ୟପାୟୀକୁ ମଦ୍ୟ ଯୋଗାଇବା ଓ ଅଫିମଖୋରକୁ ଅଫିମ ପରିବେଷଣ କରିବା ପରି ଚଳଚ୍ଚିତ୍ର ଯଦି କାମପୂର୍ଣ୍ଣ, ରୁଚି ଗର୍ହିତ, କଥାବସ୍ତୁଗୁଡ଼ିକ ପରିବେଷଣ କରି ଯୁବ ସଂପ୍ରଦାୟମାନଙ୍କୁ ଉଚ୍ଛୃଙ୍ଖଳ କରେ ତାହାହେଲେ ସମାଜରେ ପ୍ରଗତିର ଧାରା ବ୍ୟାହତ ହେବ । ଚିତ୍ରନିର୍ମାତା ତଥା ଅଭିନେତା ଓ ଅଭିନେତ୍ରୀମାନଙ୍କର ଚିତ୍ର ନିର୍ମାଣ କ୍ଷେତ୍ରରେ ଏକ ସାମାଜିକ ଦାୟିତ୍ୱ ରହିଛି ଏକଥା ଭୁଲିଗଲେ ଚଳିବ ନାହିଁ । ଚଳଚ୍ଚିତ୍ରକୁ ଏକ ଅର୍ଥକାରୀ ବ୍ୟବସାୟରେ ପରିଣତ କରିବା ଅର୍ଥ ସମାଜ ଓ ସଂସ୍କୃତିର ନୈତିକ ମାନଦଣ୍ଡକୁ ଅବନତ କରିବା ସଙ୍ଗେ ସମାନ ।

ତେଣୁ ଚଳଚ୍ଚିତ୍ରକୁ ଆଧୁନିକ ଯୁଗର ବିଭିନ୍ନ ବିଚ୍ଛୁରିତ ଜ୍ଞାନ ବିଜ୍ଞାନର ବାର୍ତ୍ତାବହ ହିସାବରେ ଓ ସମାଜର ଆନନ୍ଦ ପ୍ରମୋଦର ଏକ ଉନ୍ନତ ମାଧ୍ୟମ ହିସାବରେ, ଏହାକୁ ଉନ୍ନତ ଓ ପ୍ରଗତିଶୀଳ କରିବାକୁ ହେଲେ ଚଳଚ୍ଚିତ୍ରଗୁଡ଼ିକର କଥାବସ୍ତୁ, ପ୍ରକାଶଭଙ୍ଗୀ ଗୁଡ଼ିକୁ ଅଧିକ ବାସ୍ତବଧର୍ମୀ, ମର୍ମସ୍ପର୍ଶୀ ଓ ହୃଦୟସ୍ପର୍ଶୀ କରିବାକୁ ପଡ଼ିବ । ଜନରୁଚିର ଦ୍ୱାହି ଦେଇ ଚଳଚ୍ଚିତ୍ରର ମାନଦଣ୍ଡ ଓ କଳାତ୍ମକ ସୌନ୍ଦର୍ଯ୍ୟକୁ ବିକୃତ କରି ଏହାକୁ ଏକ ଅର୍ଥକାରୀ ପଣ୍ୟଜାତ ବ୍ୟବସାୟରେ ପରିଗଣିତ କରିବା ଅତୀବ ପରିତାପର ବିଷୟ । କାରଣ ଚଳଚ୍ଚିତ୍ର ଏକ କଳା, ଏହାର ଶିକ୍ଷାଗତ ମୂଲ୍ୟ ରହିଛି । ମଣିଷ ମନରେ ନିର୍ମଳ ଆନନ୍ଦ ଦେବା ସଙ୍ଗେସଙ୍ଗେ ତାକୁ ନୂତନ ଦୃଷ୍ଟିଭଙ୍ଗୀରେ ଅଭିଭୂତ କରିବା ହିଁ ଚଳଚ୍ଚିତ୍ରର ଉଦ୍ଦେଶ୍ୟ । ମଣିଷ ପାଇଁ ଚଳଚ୍ଚିତ୍ର ନିର୍ମିତ ହୋଇଥାଏ, ଚଳଚ୍ଚିତ୍ର ପାଇଁ ମଣିଷ ଉଦ୍ଦିଷ୍ଟ ନୁହେଁ ।

ଏହି କେତେଗୁଡ଼ିଏ ଦୋଷ ଦୁର୍ବଳତାକୁ ଦୂର କରି ପାରିଲେ, ଭାରତୀୟ ଚଳଚ୍ଚିତ୍ର ଦିନେ ଭାରତୀୟ ସଭ୍ୟତା ଓ ସଂସ୍କୃତିର ଏକ ନୂତନ, ପ୍ରଗତିଶୀଳ, ବାର୍ତ୍ତାବହ ହୋଇ ପାରିବ ବୋଲି ଆଶା ଓ ଆକାଂକ୍ଷା । ଅତି ଆନନ୍ଦର କଥା ଯେ, 'ଅଙ୍କୁର', 'ଘାଟଶ୍ରାଦ୍ଧ', 'ଭୂମିକା', 'ଅରିକଥନ', 'ସତରଞ୍ଜ କି ଖିଲାଡ଼ି' ପ୍ରଭୃତି କେତେକ ଉନ୍ନତ ଧରଣର ଚଳଚ୍ଚିତ୍ର, ଚିତ୍ର ଜଗତରେ ଏବଂ ସମାଜର ବିଭିନ୍ନ ଦର୍ଶକ ମଧ୍ୟରେ ଆଲୋଡ଼ନ ସୃଷ୍ଟି କରିଛି । ଆଶା ଓ ବିଶ୍ୱାସ–ସତ୍ୟଜିତ୍ ରାୟ, ମୃଣାଳ ସେନ୍, ଶ୍ୟାମ ବେନେଗଲ୍, ବାସୁ ଚାଟାର୍ଜୀ ପ୍ରଭୃତି ପ୍ରଖ୍ୟାତ ଚଳଚ୍ଚିତ୍ର ନିର୍ଦ୍ଦେଶକମାନେ ଭାରତୀୟ ଚଳଚ୍ଚିତ୍ରର ମାନକୁ ଅଧିକ ଉନ୍ନତ କରିବେ ।



# ସଂସ୍କୃତି

ସଂସ୍କୃତି, ଜୀବନର ମୂଲ୍ୟବୋଧର ଧାରା । ସମାଜର ପ୍ରଗତି, ସଂସ୍କୃତିର ମୂଲ୍ୟବୋଧର ବିକାଶ ଉପରେ ନିର୍ଭର କରେ । ଏହି ଏକବିଂଶ ଶତାବ୍ଦୀରେ ଅପ-ସଂସ୍କୃତି ଓ ସାମାଜିକ ଅରାଜକତା ଯେପରି କାୟା ବିସ୍ତାର କରି ସାମାଜିକ ଶାନ୍ତି ଓ ନିରାପତ୍ତାକୁ ବିପନ୍ନ କରୁଛି, ସେହି ପରିପ୍ରେକ୍ଷୀରେ ପ୍ରତ୍ୟେକ ନାଗରିକ ନିଜ ଦେଶର ସଂସ୍କୃତି ସମ୍ପର୍କରେ ସଚେତନ ହେବା ଦରକାର ।

-------------------



# ଓଡ଼ିଶାର ସଂସ୍କୃତି ଓ ସାହିତ୍ୟ

ଉତ୍କଳ ଦେଶର ମହାନ୍ ଐତିହ୍ୟ ସମ୍ପର୍କରେ ବହୁ ମନୀଷୀମାନେ ଆଲୋଚନା କରିଛନ୍ତି । ଉତ୍କଳର ଶ୍ରେଷ୍ଠତ୍ୱ ସମ୍ପର୍କରେ କପିଳ ସଂହିତାରେ ବିସ୍ତୃତ ବର୍ଣ୍ଣନା ରହିଛି । ଦେଶ ମଧ୍ୟରେ ଭାରତ ଓ ପ୍ରଦେଶ ମଧ୍ୟରେ ଉତ୍କଳ ହିଁ ଶ୍ରେଷ୍ଠ । ଯେଉଁ ଦେଶର କଳା, ସଙ୍ଗୀତ, ସାହିତ୍ୟ ଉତ୍କୃଷ୍ଟ ତାହା ହିଁ "ଉତ୍କଳ" ନାମରେ ଖ୍ୟାତ ।

ଉତ୍କଳର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି –ତତ୍–କି–ଉତ୍କୃଷ୍ଟ କଳା ଯାହାର ତାହା ହିଁ ଉତ୍କଳ । ଏକଦା ଏହି ଉତ୍କଳ ଦେଶରେ ପରମ ପରାକ୍ରମଶାଳୀ ଅଶୋକ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହୋଇଥିଲେ । ଉତ୍କଳର ମହାନ୍ ସଂସ୍କୃତିର ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ସମ୍ରାଟ ଅଶୋକ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ସାରା ବିଶ୍ୱରେ ବିଶ୍ୱପ୍ରେମର ଜାଗରଣ ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଆମେ ପ୍ରଥମେ ଏହି ସଂସ୍କୃତିର ମୂଳମନ୍ତ୍ର ବିଷୟରେ ଜାଣିବା ଉଚିତ । ଉପନିଷଦର ଆଦର୍ଶ ଓ ବେଦର ଆଦର୍ଶରେ ଯୁଗଯୁଗ ଧରି ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ ହୋଇଛି – ଏହି ଓଡ଼ିଶାର ସଂସ୍କୃତି, ଓଡ଼ିଆ ସମାଜ ଓ ଓଡ଼ିଶାର ଜୀବନ ।

ଏହି ସଂସ୍କୃତି ହେଉଛି – ଜଗନ୍ନାଥ ସଂସ୍କୃତି ।

**ଜଗନ୍ନାଥ ସଂସ୍କୃତି :**

ଏହି ସଂସ୍କୃତିର ମୂଳମନ୍ତ୍ର ହେଉଛି – ସାମ୍ୟ, ମୈତ୍ରୀ, ବିଶ୍ୱପ୍ରେମ, ଗଭୀର ଉଦାର ଦୃଷ୍ଟିଭଙ୍ଗୀ, ବସ୍ତୁବାଦ ଓ ଆଧ୍ୟାତ୍ମବାଦ ମଧ୍ୟରେ ସମନ୍ୱୟର ସୃଷ୍ଟି । ଏହି ବିଶ୍ୱରେ ଏକ ମହାନ୍ ଐଶ୍ୱରିକ ଶକ୍ତି ରହିଛି : ଯାହାକୁ ଶ୍ରୀ ଅରବିନ୍ଦ 'ଅତି ମାନସ ଶକ୍ତି' କହିଛନ୍ତି – ତାହା ଜୀବନର ପ୍ରତି ଛନ୍ଦରେ ପ୍ରକାଶିତ । ମଣିଷ ମାତ୍ରେ ହିଁ ସେହି ଅତି ମାନସ ଶକ୍ତିର ଏକ ଅଂଶ । ଜାତି–ଧର୍ମ–ବର୍ଣ୍ଣ–ନିର୍ବିଶେଷରେ ପୃଥିବୀର ସବୁ ମଣିଷ ସମାଜ ଏକ– ଏହି ସାମ୍ୟଭାବ ଆମ ଜଗନ୍ନାଥ ସଂସ୍କୃତିର ହେଉଛି ମୂଳମନ୍ତ୍ର–ଯାହା ବୈଦିକ ଯୁଗରେ ଦିନେ ମୁନିଋଷିମାନେ ଉଦାର କଣ୍ଠରେ ଗାଉଥିଲେ –

ସମାନୋ ମନ୍ତ୍ର ସମିତି ସମାନି
ସମାନମ୍ ମନଃ ସହଚିତ୍ତମେଷାମ୍ ।
ସମାନଂ ମନ୍ତ୍ର ମଭି ମନ୍ତ୍ରୟେ ବଃ
ସମାନେନ୍ ବୋ ଭବିଷ୍ୟ କୁହୋମି
ସମାନୀ ବା ଆକୁତୀ
ସମାନା ହୃଦୟାନି ବଃ
ସମାନ ମସ୍ତୁ ବୋମନୋ
ଯଥାବଃ, ସୁସହାସତି ।

(ଋକ୍‌ବେଦ ୧୦ ମଣ୍ଡଳ ୧୯୧୪)

ଅର୍ଥାତ୍ –

"ତୁମ୍ଭମାନଙ୍କ ସ୍ତୁତି ଏକ ପ୍ରକାର – ଅନୁକରଣ ମଧ୍ୟ ଏକ ପ୍ରକାର ହେଉ–ମୁଁ ମଧ୍ୟ ତୁମ୍ଭମାନଙ୍କ ପରି ମନ୍ତ୍ରକୁ ଐକ୍ୟ ବିଧାନ ପାଇଁ ସଂସ୍କାର କରେ । ହେ ଦେବଗଣ ! ତୁମ୍ଭ ସମସ୍ତଙ୍କର ସାଧାରଣ ହବି ଦ୍ୱାରା ମୁଁ ଆହୁତି ପ୍ରଦାନ କରୁଅଛି । ତୁମ୍ଭମାନଙ୍କର ସଂକଳ୍ପ ସମାନ ହେଉ । ତୁମ୍ଭମାନଙ୍କର ହୃଦୟ ସମୂହ ଓ ତୁମ୍ଭମାନଙ୍କ ଅନ୍ତଃକରଣ ସମାନ ହେଉ ।

ତୁମ୍ଭମାନଙ୍କ ମଧ୍ୟରେ ପରମ ଐକ୍ୟ ସୁପ୍ରତିଷ୍ଠିତ ହେଉ । ସମସ୍ତେ ସୁଖରେ ସୁଖୀ ଓ ସୁସଂହତ ଜୀବନ ଯାପନ କରନ୍ତୁ" ଏହା ହିଁ ଋକ୍‌ବେଦର ସାମ୍ୟ ଓ ମୈତ୍ରୀ ଭାବର ମୂଳମନ୍ତ୍ର–ଏହି ବୈଦିକ ସଂସ୍କୃତି ହିଁ ଓଡ଼ିଆ ଜଗନ୍ନାଥ ସଂସ୍କୃତିର ପ୍ରାଣକେନ୍ଦ୍ର । ଏହି ଶ୍ରୀକ୍ଷେତ୍ରରେ ଆଦିବାସୀ, ହରିଜନ, ରାଜା, ମନ୍ତ୍ରୀ ସମସ୍ତେ ସମାନ । ଏହିଠାରେ ସବୁ ଧର୍ମର ସମନ୍ୱୟ ଦେଖିବାକୁ ମିଳେ । ହିନ୍ଦୁ,ବୈଷ୍ଣବ, ବୌଦ୍ଧ ଓ ଜୈନ ସମସ୍ତେ ଜଗନ୍ନାଥଙ୍କୁ ହିଁ ସେମାନଙ୍କର ବେଦତା ରୂପେ ଗ୍ରହଣ କରିଛନ୍ତି । ଏହି ଉତ୍କଳର ଶ୍ରୀକ୍ଷେତ୍ର ଭାରତର ଶ୍ରେଷ୍ଠ ଧର୍ମକ୍ଷେତ୍ର ରୂପେ ପରିଗଣିତ । ମନୀଷୀ ଶଙ୍କରାଚାର୍ଯ୍ୟ, ଚୈତନ୍ୟ, ସାଲବେଗ, ଜଗନ୍ନାଥ ଦାସ, ଦୀନକୃଷ୍ଣ ଏହି ମାଟିରେ ସମସ୍ତେ ପ୍ରେମ ଓ ଜୀବନର ସଙ୍ଗୀତ ଗାଇଛନ୍ତି ।

କଠୋପନିଷଦର ମହତ୍‌ବାଣୀ ଜଗନ୍ନାଥ ସଂସ୍କୃତିକୁ ମଧ୍ୟ ଏକ ଭାଗବତ ସଂହତି ଆଣି ଦେଇଛି । 'ଜଗନ୍ନାଥ ସଂସ୍କୃତି' ମଧ୍ୟରେ ଦ୍ରାବିଡ଼ ଓ ଆର୍ଯ୍ୟ ସଭ୍ୟତା ବସ୍ତୁବାଦ ଓ ଆଧ୍ୟାତ୍ମବାଦ ମଧ୍ୟରେ ଯେଉଁ ସମନ୍ୱୟ ଦେଖିବାକୁ ମିଳେ ତାହାର ମୂଳମନ୍ତ୍ର କଠୋପନିଷଦରେ ରହିଛି ।

"ଯଦା ସର୍ବେ ପ୍ରମୁଚ୍ୟନ୍ତେ କାମା ଯେଦସ୍ୟ ହୃଦିଶ୍ରିତାଃ
ଅଥ ମର୍ତ୍ତ୍ୟୋମୃତୋ ଭବତ୍ୟତ୍ର ବ୍ରହ୍ମ ସମଶ୍ନୁତେ ।"

(ମରଣଶୀଳ ମଣିଷ ହିଁ ତା'ର ସ୍ୱଭାବର ପରିଶୁଦ୍ଧି ବଳରେ ଅମୃତ ଲାଭ କରେ ଏବଂ ଏହି ଦେହ ମାଧ୍ୟମରେ ବ୍ରହ୍ମବାଦୀ ବ୍ରହ୍ମ ଉପଲବ୍ଧ କରେ । ଉପନିଷଦର ଲକ୍ଷ୍ୟ କୌଣସି ଆପାର୍ଥିବ ଅତି ମାନବିକ ଆଦର୍ଶ ପ୍ରତି ଉଦ୍ଦିଷ୍ଟ ନୁହେଁ – ଏହି ଜରାଜର୍ଜ୍ଜରିତ ଯୁଗ ଯନ୍ତ୍ରଣା

ବିକ୍ଷୋଭିତ ପୃଥିବୀରେ ମଣିଷ ଜୀବନର ସାର୍ଥକ ରୂପାୟ ନାହିଁ ଏହାର ଏକମାତ୍ର ଲକ୍ଷ୍ୟ । ଏହି ପ୍ରକାର ''ଜୀବନ ଚେତନା'' ହିଁ ଓଡ଼ିଶା ସଂସ୍କୃତି ଓ ସାହିତ୍ୟରେ ପ୍ରକାଶିତ । ଏହି ଜୀବନ ଚେତନାରେ ଉଦ୍‌ବୁଦ୍ଧ ହୋଇ ଉତ୍କଳର ସ୍ରଷ୍ଟା, କବି, କଳାକାରମାନେ ଓଡ଼ିଶାର କଳା, ସଂସ୍କୃତିକୁ ସମୁନ୍ନତ କରିଥିଲେ । ତେଣୁ ଯଥାର୍ଥରେ କୁହାଯାଏ ଯେ, ଯେଉଁ ଦେଶର କଳା, ସଙ୍ଗୀତ ଓ ସାହିତ୍ୟ ଉତ୍କୃଷ୍ଟ ତାହା ହିଁ ଉତ୍କଳ ନାମରେ ଖ୍ୟାତ ।

ଦତ୍ତ, ଦମୟତ ଓ ଦୟଧ୍ୱମ ଏହି ତ୍ରିଧାରା ଉତ୍କଳର ଆଦର୍ଶ । ଦତ୍ତ ତ୍ୟାଗ, ଦମୟତ ଅର୍ଥ ସଂଯମ ଓ ଦୟଧ୍ୱମର ଅର୍ଥ କରୁଣା – ଏହା ହିଁ ଓଡ଼ିଶାର ଜୀବନକୁ ଯୁଗେ ଯୁଗେ ପ୍ରଭାବିତ କରିଆସିଛି । ଭଗବଦ୍ ବିଶ୍ୱାସ, ପାପପୁଣ୍ୟର ବିଚାର,ଦାନ,ଧର୍ମ, ଅହିଂସା–ଆମ ସଂସ୍କୃତିର ବୈଶିଷ୍ଟ୍ୟ ।

ଉଚ୍ଛୃଙ୍ଖଳା ଓ ବ୍ୟଭିଚାର ଜୀବନ, ସମାଜ ଓ ସଂସ୍କୃତିକୁ ନଷ୍ଟଭ୍ରଷ୍ଟ କରେ । ଏହି ବ୍ୟଭିଚାରର ରୂପ ଆମ ସାରଳା ଦାସ ଓ ଭକ୍ତ କବିମାନେ ଅତି ସୁନ୍ଦର ଭାବରେ ଲେଖିଯାଇଛନ୍ତି ସେମାନଙ୍କ କାବ୍ୟ ଓ କବିତାରେ । ସାରଳା ଦାସଙ୍କ ''ମହାଭାରତ'' ଉପରୋକ୍ତ ଭଗବତ ଚିନ୍ତାଧାରାର ଏକ ମହାନ୍ କାବ୍ୟ । ଏହି ବ୍ୟଭିଚାର ହିଁ ସମାଜକୁ ଅଧଃପତିତ କରେ । ଏହି ଚିନ୍ତାଧାରା ସାରଳା ଦାସଙ୍କ ମହାଭାରତରେ ଅତି ସୁନ୍ଦର ଭାବରେ ପ୍ରକାଶିତ । ଏପରିକି ଶ୍ରୀକୃଷ୍ଣ ମଧ୍ୟ ନିଜର କୁକର୍ମ ନିମନ୍ତେ ଅଶାନ୍ତି ଭୋଗ କରିଛନ୍ତି । ସେହିପରି ଜଗନ୍ନାଥ ଦାସଙ୍କର 'ଶ୍ରୀମଦ୍ ଭାଗବତ', ଦୀନକୃଷ୍ଣ ଦାସଙ୍କ'ରସକଲ୍ଲୋଳ' ଏବଂ ବଳରାମ ଦାସଙ୍କର 'ଦାଣ୍ଡୀ ରାମାୟଣ' ମଧ୍ୟ ଗ୍ରାମ୍ୟ ଜୀବନକୁ ପ୍ରଭାବିତ କରି ଆସିଛି । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଉଚ୍ଚକୋଟିର ସାହିତ୍ୟ, 'ମହିମା ଧର୍ମର ସଙ୍ଗୀତ', ସତ୍ୟବାଦୀ ଯୁଗରେ ଦେଶ–ପ୍ରେମିକ ଉତ୍କଳମଣି ଗୋପବନ୍ଧୁଙ୍କ ''କାରା କବିତା'', ଭକ୍ତକବି ମଧୁସୂଦନଙ୍କ''ଭକ୍ତିଗୀତି ସମ୍ୱଳିତ କାବ୍ୟ କବିତା'', ବ୍ୟାସକବି ଫକୀରମୋହନଙ୍କର ବାସ୍ତବଧର୍ମୀ ଉପନ୍ୟାସ, ''ଛ'ମାଣ ଆଠଗୁଣ୍ଠ'', ''ମାମୁଁ'' ଓ ତାଙ୍କ 'ଆତ୍ମ ଜୀବନୀ', ଓଡ଼ିଆ ସାହିତ୍ୟ ଓ ଜାତିର ଗୌରବ, ତଥା ଆମ ସାହିତ୍ୟର ରତ୍ନଭଣ୍ଡାର । ଓଡ଼ିଆ ଭାଷାକୁ ନୂତନ ଭାଷାରେ ଓ ନୂତନ ରୂପରେ ପ୍ରାଣବନ୍ତ କରିବା, ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ଉନ୍ନତ କରିବାରେ ଫକୀରମୋହନଙ୍କର ଅବଦାନ ଅଦ୍ୱିତୀୟ । ତାଙ୍କର ସାହିତ୍ୟ ଅନୁରାଗ, ଜାତିପ୍ରେମ ଆମ ମନରେ ଗଭୀର ପ୍ରେରଣା ସୃଷ୍ଟି କରେ । ଉତ୍କଳ ପ୍ରଦେଶ ନିର୍ମାଣର ବିଶିଷ୍ଟ ଜନନାୟକ ଶ୍ରୀ ମଧୁସୂଦନ ଦାସଙ୍କ ପ୍ରେରଣା, ଉଦ୍‌ବୋଧନ ଓ ଆଦର୍ଶ ଶତଶତ ଓଡ଼ିଆଙ୍କୁ ଉଦ୍‌ବୁଦ୍ଧ କରି ଆସିଛି । ଆଜି ମନରେ ଉଦ୍ଦୀପନା ସୃଷ୍ଟି କରେ ମଧୁବାବୁଙ୍କ ବାଣୀ

**''ଜାତି ନନ୍ଦିଘୋଷ ଚଳିବ କି ଭାଇ ସ୍ୱାର୍ଥକୁ**
**ସାରଥୀ କଲେ, ଟାଣେ କିରେ ଗାଡ଼ି ଦାନାର ତୋବଡ଼ା**
**ଘୋଡ଼ା ମୁହେଁ ବନ୍ଧା ଥିଲେ ।''**

କିମ୍ବା

ଗୋପବନ୍ଧୁଙ୍କର ତ୍ୟାଗର ବାଣୀ ମନେପଡ଼େ–

**''ଜାତୀୟ ମମତା ବିଶ୍ୱଜନ ପ୍ରୀତି । ଉତ୍କଳବାସୀର ହେଉ ଏହା ନୀତି ।''**

ଗୋପବନ୍ଧୁଙ୍କର ଦେଶ–ପ୍ରେମର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଆମକୁ ଆଜି ବି ପ୍ରଭାବିତ କରେ, ସେ ଗାଇଛନ୍ତି–

**''ମିଶୁ ମୋର ଦେହ ଏ ଦେଶ ମାଟିରେ**
**ଦେଶବାସୀ ଚାଲି ଯାଆନ୍ତୁ ପିଠିରେ**
**ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼**
**ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।''**

## କଳା, ଭାସ୍କର୍ଯ୍ୟ ଓ ନୌବାଣିଜ୍ୟର ଐତିହ୍ୟ :

ଉତ୍କଳର ଅତୀତରେ କଳା, ଭାସ୍କର୍ଯ୍ୟ କଥା ମନେ ପଡ଼ିଲେ ଆଜି ବି ଆମ ମନରେ ରୋମାଞ୍ଚ ସୃଷ୍ଟି ହୁଏ । ଆମର ପୂର୍ବ ପୁରୁଷମାନେ ଅତି ବଡ଼ କଳାକାର ଥିଲେ । ଆଜି ସେମାନଙ୍କର ମନ୍ଦିର ନିର୍ମାଣର କୌଶଳ ଓ ଦକ୍ଷତା –''କୋଣାର୍କ'', ''ଜଗନ୍ନାଥ '' ଓ ଭୁବନେଶ୍ୱରର ଅନେକ ମନ୍ଦିରଗାତ୍ରର ଭାସ୍କର୍ଯ୍ୟରେ ପ୍ରସ୍ଫୁଟିତ । ସେ ସବୁ ମନ୍ଦିର କାରୁକାର୍ଯ୍ୟ ଯେ କୌଣସି ଦର୍ଶକ ଦେଖିଲେ ମନ୍ତ୍ର–ମୁଗ୍ଧ ହୋଇପଡ଼େ । ଖଣ୍ଡିଏ ଖଣ୍ଡିଏ ପଥରରେ ଜୀବନ ବୈଚିତ୍ର୍ୟର ବର୍ଣ୍ଣାଢ଼୍ୟ ଚିତ୍ର ଏପରି ସୁନ୍ଦର ଭାବରେ ଖୋଦିତ ହୋଇଛି ଯେ, ତାହା ପୃଥିବୀର ଯେ କୌଣସି ପର୍ଯ୍ୟଟକଙ୍କୁ ବିମୋହିତ କରେ । ଚାର୍ଲସ୍ ଫେବ୍ରି Charls Fabri କୋଣାର୍କର ଭାସ୍କର୍ଯ୍ୟ ସମ୍ବନ୍ଧରେ ତାଙ୍କର "History of the arts of Orissa"ରେ ଲେଖିଛନ୍ତି–

Sun temple of Konarka would be matter for wonder anywhere ; but in its fantastic loneliness on the sands of the seashore, the impact of this vast and splendid structure is breath-taking and the visitors first reaction as well his last-is that there are few monuments in the world comparable to it."

## ଓଡ଼ିଆ–ସଙ୍ଗୀତ ଓ ନୃତ୍ୟ –

ଓଡ଼ିଆ ସଙ୍ଗୀତ ଓ ନୃତ୍ୟ ମଧ୍ୟ ଭାରତର ସଂସ୍କୃତିର ବିକାଶରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସିଛି । ଓଡ଼ିଆ 'ଚମ୍ପୂ' ଓଡ଼ିଆ 'ଜଣାଣ', ଓଡ଼ିଶାର ବିଖ୍ୟାତ 'ଓଡ଼ିଶୀ ନୃତ୍ୟ ଓ ଛଉ ନୃତ୍ୟ' ଅସଂଖ୍ୟ ଭାରତୀୟ ଓ ବିଦେଶୀଙ୍କ ମନକୁ ବିମୁଗ୍ଧ କରୁଛି । ଓଡ଼ିଆ ଲୋକଗୀତି, ଯାତ୍ରା, ପାଲା, ଦଣ୍ଡନାଚ, କରମା ଓ ବିଭିନ୍ନ ଆଦିବାସୀ ନୃତ୍ୟ ଓଡ଼ିଶାର ଗ୍ରାମ୍ୟ ଜୀବନକୁ ମୁଖରିତ କରିଛି । ଏଇ ଲୋକଗୀତି ଓଡ଼ିଶାରେ ବାର

ମାସରେ ତେର ପର୍ବ ପର୍ବାଣୀରେ ଓଡ଼ିଶାର ଜାତୀୟ ଜୀବନକୁ ପ୍ରାଣ ପ୍ରାଚୁର୍ଯ୍ୟରେ ପରିପୂର୍ଣ୍ଣ କରିଦିଏ । ଓଡ଼ିଶାର ପର୍ବପର୍ବାଣୀ ଓ ଲୋକଗୀତି ମଧ୍ୟରେ ଓଡ଼ିଶାର ଧର୍ମଭାବ, ଉଦାରଦୃଷ୍ଟିଭଙ୍ଗୀ ଓ ଗଭୀର କଳାତ୍ମକ ସ୍ୱାଭିମାନର ସୁନ୍ଦର ଅଭିବ୍ୟକ୍ତି ଦେଖିବାକୁ ମିଳେ । ଏତଦ୍‌ବ୍ୟତୀତ ଓଡ଼ିଶାର ନୌବାଣିଜ୍ୟର ଗୌରବମୟ ଐତିହ୍ୟ କଥା ଚିନ୍ତା କଲେ ଆଜି ଆମକୁ ଆଶ୍ଚର୍ଯ୍ୟ ଲାଗେ– ଆମର ପୂର୍ବପୁରୁଷମାନେ ଯେ ଏତେ ଅସୀମ ବୀରତ୍ୱ ଓ ଦୁଃସାହସିକତା ପ୍ରଦର୍ଶନ କରି ଜାଭା, ସୁମାତ୍ରା, ବାଲି, ସିଂହଳ ଓ ସୁଦୂର ଚୀନ ଦେଶକୁ ସମୁଦ୍ରରେ ଯାଇ ନୌବାଣିଜ୍ୟରେ ଭାରତରେ ଶୀର୍ଷସ୍ଥାନ ଅଧିକାର କରିଥିଲେ, ସାରା ଓଡ଼ିଶାରେ ଏହି ମହାନ୍ ଐତିହ୍ୟର ଉତ୍ସବ ପାଳିତ ହୁଏ । ପ୍ରତିବର୍ଷ କାର୍ତ୍ତିକ ମାସରେ କାର୍ତ୍ତିକ ପୂର୍ଣ୍ଣିମା ଦିନ ବୋଇତ ବନ୍ଦାଣ ଉତ୍ସବ ପାଳିତ ହୁଏ । ପ୍ରତିବର୍ଷ କାର୍ତ୍ତିକ ମାସରେ କାର୍ତ୍ତିକ ପୂର୍ଣ୍ଣିମା ଦିନ ବୋଇତ ବନ୍ଦାଣ ଉତ୍ସବ ପାଳିତ ହୁଏ । ଏହି ଉତ୍ସବ ଓଡ଼ିଆ ଜାତୀୟ ପ୍ରାଣରେ ଜାତୀୟ ମମତାର ସ୍ପନ୍ଦନ ସୃଷ୍ଟି କରେ । ଓଡ଼ିଆ ପ୍ରାଚୀନ ସମାଜ ଓ ସଂସ୍କୃତିରେ ଓ ଗ୍ରାମ୍ୟ ଜୀବନରେ ଏକ ବିରାଟ ପ୍ରାଣ–ପ୍ରାଚୁର୍ଯ୍ୟର ବର୍ଣ୍ଣାଢ଼୍ୟ ଅଭିବ୍ୟକ୍ତି ଆମ ମନରେ ଅପାର ଆନନ୍ଦ ଓ ଗୌରବବୋଧ ସୃଷ୍ଟି କରେ । କିନ୍ତୁ ଆଜି ବିଂଶ ଯୁଗରେ ଏହି ସପ୍ତଦଶକରେ ଜଣେ ଓଡ଼ିଆ ଭାବରେ ମୋ ମନରେ ଗୋଟିଏ ପ୍ରଶ୍ନ ଉଠେ ଯେ, ଗୋଟିଏ ମହାନ ସଂସ୍କୃତି ଐତିହ୍ୟର ଦାୟାଦ ହୋଇ ମଧ୍ୟ ଆଜି କାହିଁକି ଆମ ସମାଜ ଓ ସଂସ୍କୃତିକୁ ଉନ୍ନତ କରିବା ପାଇଁ ଆମ ଯୁବଗୋଷ୍ଠୀ ମଧ୍ୟରେ ସୃଷ୍ଟିଧର୍ମୀ ପ୍ରେରଣା ଓ ଜୀବନ ଚେତନା ସୃଷ୍ଟି ହୋଇ ପାରୁ ନାହିଁ । ଏହାର କାରଣ ଏୟା ହୋଇପାରେ ଯେ ଆମର ଐତିହ୍ୟ ବିଷୟରେ ଆମେ ସମସ୍ତେ ଉଦାସୀନ ଏବଂ ଆମେ ଆମର ଐତିହ୍ୟକୁ ପରିତ୍ୟାଗ କରି ତଥାକଥିତ ଆଧୁନିକତାର ସ୍ରୋତରେ ଆଦର୍ଶବିହୀନ ହୋଇ ଭାସି ଚାଲିଛୁ । ଶିଳ୍ପ–ବିଜ୍ଞାନ ଭିତ୍ତିକ ସଭ୍ୟତାର ବାହ୍ୟାଡ଼ମ୍ବରରେ ଆମ୍ଭେମାନେ ଆଜି ଅନ୍ଧ ଓ ଦିଗ୍‌ଭ୍ରାନ୍ତ । ଆଜି ପବିତ୍ର ସାଂସ୍କୃତିକ ଅଧିବେଶନ ଗୁଡ଼ିକରେ ଆମର ଆତ୍ମ ସମୀକ୍ଷା କରିବା ଉଚିତ । ଆମର ଦୋଷ ଦୁର୍ବଳତା, ଆମ ସମାଜର ସମସ୍ୟାମାନ ଅନୁଧ୍ୟାନ କରିବା ଉଚିତ । ମୋର ମନେହୁଏ ଆମ ସଂସ୍କୃତି ଓ ସମାଜର ଅଭିବୃଦ୍ଧିର ପ୍ରଧାନ ଅନ୍ତରାୟ ହେଉଛି ଆମର ଦାରିଦ୍ର୍ୟ, ଆମର ନିରକ୍ଷରତା, ଆମର କୁସଂସ୍କାର, ପାଶ୍ଚାତ୍ୟ ଚିନ୍ତାର ଅନ୍ଧ ଅନୁକରଣ ଏବଂ ସର୍ବୋପରି ଆମ୍ଭ ଐତିହ୍ୟ ସମ୍ବନ୍ଧରେ ଉଦାସୀନତା ଓ ଅଜ୍ଞତା ।

ଆଜି ବି ଆମ କଲେଜ ଓ ସ୍କୁଲମାନଙ୍କରେ ଶିକ୍ଷା ପାଠ୍ୟକ୍ରମରେ ଆମ ସମାଜ ଓ ସଂସ୍କୃତି ସମ୍ବନ୍ଧରେ ଉନ୍ନତ ଅଧ୍ୟାପନା ଓ ଗବେଷଣାର ସୁବିଧା ସୁଯୋଗ ନାହିଁ । ସାଂପ୍ରତିକ ଓଡ଼ିଆ ସମାଲୋଚନା ସାହିତ୍ୟ, କାବ୍ୟ କବିତା ଓ ନାଟକରେ ଆମ ଐତିହ୍ୟର, ଆମ ଗ୍ରାମ୍ୟ ଜୀବନର ବର୍ଣ୍ଣାଢ଼୍ୟ ଚିତ୍ର ପରିବର୍ତ୍ତେ ପାଶ୍ଚାତ୍ୟ ଚିନ୍ତାଧାରା ଯଥା – ଫ୍ରଏଡ଼ଙ୍କର ''ଯୌନତତ୍ତ୍ୱ'' କିମ୍ବା ''ସ୍ଥିତିବାଦୀ'' ଚିନ୍ତାଧାରାର – ଉଦ୍‌ଭଟତା ଆମ ସାହିତ୍ୟିକ ସାରଳ୍ୟ

ଦାସ ଓ ଜଗନ୍ନାଥ ଦାସଙ୍କୁ ନ ଜାଣି, ଫକୀର ମୋହନଙ୍କର ''ଛ'ମାଣ ଆଠଗୁଣ୍ଠ'' କିମ୍ବା ଉପେନ୍ଦ୍ର ଭଞ୍ଜଙ୍କର ''ଲାବଣ୍ୟବତୀ'' କୁ ନ ପଢ଼ି, ସାହିତ୍ୟ ସୃଷ୍ଟି କରିବାରେ ସାହିତ୍ୟିକ ଓ କବି ହିସାବରେ ପରିଗଣିତ ହେବାରେ ଅଧିକ ଆଗ୍ରହୀ । ଆଧୁନିକ କବିର କବିତା ଆଉ ଗଳ୍ପରେ ବିଷାଦବାଦ ଓ ହତାଶାର ଚିତ୍ର ଅଧିକ ଦେଖିବାକୁ ମିଳୁଛି । ଏଥିରେ ନା ଅଛି ପ୍ରାଣ-ପ୍ରାଚୁର୍ଯ୍ୟ ନା ଅଛି ଗଭୀର ଆତ୍ମାନୁଭୂତି, ଯାହାକି ପାଠକଙ୍କର ମନକୁ ଓ ହୃଦୟକୁ ଅଭିଭୂତ କରିବ । ଏହି କାରଣରୁ ଆଜିର ସାହିତ୍ୟ, କାବ୍ୟ, କବିତା, ପାଠକ ଓ ପାଠିକାଙ୍କଠାରୁ ଦୂରେଇ ଯାଇଛି । କବିତା ଆଜି ଦୁର୍ବୋଧ ଓ ଗଳ୍ପ ଆଜି ଏକ ରସ ବିହୀନ ନୂତନ ଶୈଳୀର ଅନୁକରଣ ମାତ୍ର । ତଥାପି ସ୍ୱୀକାର କରିବାକୁ ହେବ ଯେ ଆଧୁନିକ ଓଡ଼ିଆ ସାହିତ୍ୟ ଓ କିଛି ଓଡ଼ିଆ କାବ୍ୟ ଓ କବିତା, ନାଟକ, ଗଳ୍ପରେ ଉନ୍ନତ ରୁଚିର ଓ ଓଡ଼ିଆ ଐତିହ୍ୟର ସ୍ୱର ଓ ସ୍ୱାକ୍ଷର ରହିଛି, କିନ୍ତୁ ଏହାର ସଂଖ୍ୟା ଖୁବ୍ କମ୍ । ବର୍ତ୍ତମାନ ଆଉ ଏକ ଦୁଃଖର ବିଷୟ ଯେ ଆମ ସାମାଜିକ ଜୀବନରେ ଗଠନମୂଳକ କାର୍ଯ୍ୟପନ୍ଥା ନାହିଁ । କେବଳ ସ୍ଲୋଗାନ୍ ଧର୍ମୀ ଶୋଭାଯାତ୍ରା ପଛରେ ଆମ ଯୁବଗୋଷ୍ଠୀ ଉନ୍ମାଦ । ଅତି ଦୁଃଖ ଲାଗେ ଯେ, ଆମର ଶିକ୍ଷିତ ଛାତ୍ରମାନେ ପର୍ବପର୍ବାଣୀରେ-ଦୁର୍ଗାପୂଜା କିମ୍ବା ସରସ୍ୱତୀ ପୂଜାର ମେଢ଼ ଭସାଣୀ ଉତ୍ସବରେ ମଦ ଖାଇ ନାଚି ନାଚି ରାତିସାରା ଶୋଭାଯାତ୍ରାରେ ମାତି ଯାଆନ୍ତି ଏବଂ ଏହାଦ୍ୱାରା ଧର୍ମଭାବର କି ଉନ୍ନତି ସାଧିତ ହୁଏ ତାହା ଆପଣମାନେ ଚିନ୍ତା କରନ୍ତୁ ଏବଂ ଏହି ଉତ୍ସବ ପାଳନ ପାଇଁ ହଜାର ହଜାର ଟଙ୍କା ଚାନ୍ଦା ସଂଗ୍ରହ ନିମିତ୍ତ ଅଭିଯାନ କରିବାରେ କେତେ ଯେ ଆମ ଯୁବଗୋଷ୍ଠୀର ଶକ୍ତି କ୍ଷୟ ହେଉଛି – ତାହା ଆପଣମାନେ ହୃଦୟଙ୍ଗମ କରିପାରିବେ । ଆଜି ଯୁବଗୋଷ୍ଠୀ ଏକ ପ୍ରକାର ଉଦ୍‌ଭ୍ରାନ୍ତ ଓ ଦିଗ୍‌ଭ୍ରଷ୍ଟ । ତେଣୁ ଆଜି ସମୟ ଆସିଛି ଆମକୁ ଆତ୍ମସମୀକ୍ଷା କରି ଆମର ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ଜୀବନର ଦୋଷ ଦୁର୍ବଳତାକୁ ପରିତ୍ୟାଗ କରି ଓଡ଼ିଶାର ସମାଜ ଓ ସଂସ୍କୃତିର ସାମୂହିକ ଉନ୍ନତି ପାଇଁ ଆମକୁ ସୃଜନଶୀଳ ସାହିତ୍ୟ ସୃଷ୍ଟି କରିବାକୁ ହେବ । ଫକୀରମୋହନଙ୍କର ସାହିତ୍ୟ-ଅନୁରାଗ, କର୍ମ-ପ୍ରେରଣା, ଗୋପବନ୍ଧୁଙ୍କର ତ୍ୟାଗ ଓ ପ୍ରେମ ଏବଂ ମଧୁବାବୁଙ୍କର ଦେଶ-ପ୍ରେମିକତା, ଉଦାର ଓ ଉନ୍ନତ ଦୃଷ୍ଟିକୋଣ ଦ୍ୱାରା ଆମକୁ ଉଦ୍‌ବୁଦ୍ଧ ହେବାକୁ ପଡ଼ିବ । ମୋର ଆଶା ଓ ବିଶ୍ୱାସ ଯେ ଆମେ ସମସ୍ତେ ଏହି ମହାପୁରୁଷମାନଙ୍କର ଜାତୀୟତାବୋଧରେ ଉଦ୍‌ବୁଦ୍ଧ ହୋଇ ଆମକୁ ସୃଜନଶୀଳ କର୍ମରେ ଲିପ୍ତ ହେବାକୁ ପଡ଼ିବ । କର୍ମ ଓ ଚିନ୍ତାର ପ୍ରାଣପ୍ରାଚୁର୍ଯ୍ୟ ମଧ୍ୟରେ ଜାତିର ନନ୍ଦିଘୋଷକୁ ପ୍ରଗତି ପଥରେ ଆଗେଇ ନେଇ ଯିବା ପାଇଁ ଆମକୁ ଶପଥ ନେବାକୁ ହେବ ।



# ଓଡ଼ିଆ ସଂସ୍କୃତିର ବିକାଶ ଓ ସୁରକ୍ଷା

ଓଡ଼ିଶାର ସଂସ୍କୃତିର ସୁରକ୍ଷା ବିଷୟରେ ଆଲୋଚନା କରିବା ପୂର୍ବରୁ ପ୍ରଥମେ ଓଡ଼ିଆ ସଂସ୍କୃତିର ସ୍ୱରୂପ ଓ ବୈଶିଷ୍ଟ୍ୟ ସମ୍ବନ୍ଧରେ ଏକ ବିହଙ୍ଗାବଲୋକନ କଲେ ଆଲୋଚନା ସରସ ଓ ହୃଦୟଗ୍ରାହୀ ହୋଇପାରିବ । ଆମ ସାମାଜିକ ଜୀବନଧାରାରେ ଯାହା କିଛି ମୂଲ୍ୟବାନ, ପ୍ରାଣବନ୍ତ, ଶାଶ୍ୱତ ଓ ସୃଷ୍ଟିଶୀଳ, ତା'ର ଅନ୍ୟ ନାମ ହେଉଛି ସଂସ୍କୃତି । ସଂସ୍କୃତି ହେଉଛି ଏକ ଜାତିର ଜୀବନଧାରା – ଏକ ଶକ୍ତି, ଯାହା ଗୋଟିଏ ସମାଜକୁ ଦିଗ୍‌ଦର୍ଶନ ଦିଏ ଓ ବାଟ କଢ଼ାଇ ଆଗକୁ ନେଇଯାଏ । ସଂସ୍କୃତି ହିଁ ବ୍ୟକ୍ତିର ମୂଲ୍ୟବୋଧକୁ ଅନେକ ପରିମାଣରେ ନିୟନ୍ତ୍ରିତ କରେ । ପରମ୍ପରା ଓ ଐତିହ୍ୟ ସାଂସ୍କୃତିକ ସ୍ୱାତନ୍ତ୍ର୍ୟର ବାହକ । ସାହିତ୍ୟ କଳା, ନୃତ୍ୟ ଓ ସଙ୍ଗୀତ ସର୍ବୋପରି ସାମାଜିକ ରୀତିନୀତି ଓ ଜୀବନଧାରାର ନିର୍ଯ୍ୟାସରେ ଗଢ଼ାହୁଏ ସଂସ୍କୃତି । ସଂସ୍କୃତି କହିଲେ ପ୍ରାଚୀନ ମନ୍ଦିର, ଇତିହାସ, ସାହିତ୍ୟ, ତାମ୍ରପତ୍ରକୁ କେବଳ ବୁଝାଏ ନାହିଁ, ତାହା ଏକ ''ଶାଶ୍ୱତ ଦୃଷ୍ଟିଭଙ୍ଗୀ'', ଯାହାର ଅନୁସରଣରେ ସମାଜର ପ୍ରଗତି ସମ୍ଭବପର ହୋଇପାରେ । ଉତ୍କଳ ପ୍ରଦେଶ ଗଠନର ପଚାଶ ବର୍ଷ ପରେ ମଧ୍ୟ ଆଜି ଆମର ସାମାଜିକ, ଅର୍ଥନୈତିକ ମୂଲ୍ୟବୋଧର ଅବକ୍ଷୟ, ଉଗ୍ରସାଂପ୍ରଦାୟିକତା, ଜାତିପ୍ରଥା ଓ ସାମାଜିକ କୁସଂସ୍କାର ପ୍ରତି ମୁହୂର୍ତ୍ତରେ ଆମ ସମାଜକୁ ପ୍ରତିହତ ଓ ବିଖଣ୍ଡିତ କରୁଅଛି । ତେଣୁ ସାଂସ୍କୃତିକ ମୂଲ୍ୟବୋଧର ଅଭିବୃଦ୍ଧି ପାଇଁ ଆଜି ଏହା ପ୍ରତ୍ୟେକ ଓଡ଼ିଆ ଅଧିବାସୀଙ୍କର ଅନୁଚିନ୍ତା ହେବା ଆବଶ୍ୟକ । ଭାରତ ସ୍ୱାଧୀନ ହେବାର ଅଠାବନ ବର୍ଷ ପରେ ମଧ୍ୟ ଦେଶର ବିଚ୍ଛିନ୍ନତାବାଦ, ସାଂପ୍ରଦାୟିକ ହିଂସା, ଅର୍ଥନୈତିକ ବୈଷମ୍ୟ ଏତେ ଅଧିକ ପରିମାଣରେ ବୃଦ୍ଧି ପାଇଛି ଯେ, ଯାହା ଫଳରେ ପ୍ରତ୍ୟେକ ପ୍ରଦେଶ ଓ ଦେଶର ସଂସ୍କୃତି ଓ ସଂହତି ପ୍ରତି ଏକ ବିପଦ ଦେଖାଦେଇଛି । ତେଣୁ ଏହି ପରିପ୍ରେକ୍ଷୀରେ ପ୍ରତ୍ୟେକ ପ୍ରଦେଶର ଅଧିବାସୀ ଜାତୀୟ ଐକ୍ୟ ଓ ସଂହତିକୁ ଆଖି ଆଗରେ ରଖି ଆମର ପ୍ରାଦେଶିକ ସଂସ୍କୃତି ଓ ସଂହତିର ବିକାଶ ପାଇଁ ତତ୍ପର ହେବାକୁ ପଡ଼ିବ । ପ୍ରତ୍ୟେକ ବ୍ୟକ୍ତି ଯଦି ସଂସ୍କୃତି ସଂପନ୍ନ ଓ

ସୁନାଗରିକ ହୋଇ ନିଜକୁ ଗଢ଼ି ତୋଳନ୍ତି, ତାହାଲେ ବହୁ ବିବିଧତା ମଧ୍ୟରେ ଦେଶର ଐକ୍ୟ ଓ ସଂସ୍କୃତି ଅକ୍ଷୁର୍ଣ୍ଣ ରହିପାରିବ ।

ଓଡ଼ିଶା ପ୍ରଦେଶର ଇତିହାସ ଅଧ୍ୟୟନରୁ ଆମ୍ଭେ ଜାଣୁ ଏହାର ସଂସ୍କୃତି ଅତି ପ୍ରାଚୀନ ଓ ଗୌରବାବହ । ଯେଉଁ ଅଞ୍ଚଳଗୁଡ଼ିକ ଉଡ୍ର, ଉତ୍କଳ, କୋଶଳ, କଳିଙ୍ଗ ଭୂଖଣ୍ଡ ରୂପେ ପରିଚିତ ଥିଲା, ତାହା ଦ୍ୱାଦଶ ଶତାବ୍ଦୀରେ ଏକ ଗାରିମାମୟ ସାମ୍ରାଜ୍ୟରେ ପରିଣତ ହୋଇଥିଲା, ଯାହାର ଭୌଗଳିକ ସୀମା ଗଙ୍ଗାଠାରୁ ଗୋଦାବରୀ ଯାଏ ବିସ୍ତୃତ ହୋଇଥିଲା । ଏହି ଉତ୍କଳ ଦେଶର ବୈଶିଷ୍ଟ୍ୟ ହେଉଛି ଏହାର କଳା ଅତୀବ ଉତ୍କୃଷ୍ଟ । ଏକଦା ଏହି ଉତ୍କଳ ଦେଶରେ ପରମ ପରାକ୍ରମଶାଳୀ ଅଶୋକ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହୋଇଥିଲେ । ଉତ୍କଳୀୟ ସଂସ୍କୃତିର ବୈଶିଷ୍ଟ୍ୟ ହେଉଛି ଜଗନ୍ନାଥ ଧର୍ମର ମହତ ଆଦର୍ଶ – ତ୍ୟାଗ, ମୈତ୍ରୀ, ବିଶ୍ୱଭ୍ରାତୃତ୍ୱ ଓ ସହନଶୀଳତାର ଚିନ୍ତାଧାରା । ଭାରତୀୟ ସଂସ୍କୃତିକୁ ପଦ୍ମଫୁଲ ସହ ତୁଳନା କରାଗଲେ ଉତ୍କଳୀୟ ସଂସ୍କୃତି ସେହି ପଦ୍ମ ଫୁଲର ଏକ କେଶର । ତେଣୁ ଉତ୍କଳମଣି ଗୋପବନ୍ଧୁ ଯଥାର୍ଥରେ କହିଥିଲେ –

"ଜଗତ ସରସେ ଭାରତକମଳ
ତା' ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।"

ଏହି ନୀଳାଚଳଧାମରେ ବହୁ ଭାଷା-ଭାଷୀ, ବହୁ ଧର୍ମାବଲମ୍ବୀ ଆସି ଉତ୍କଳ ସଂସ୍କୃତିର ଆଦର୍ଶ ଦ୍ୱାରା ଉଦ୍‌ବୁଦ୍ଧ ହୋଇଛନ୍ତି । ଶଙ୍କରାଚାର୍ଯ୍ୟ, କବି ସାଲବେଗ, ଚୈତନ୍ୟ ଏହି ଶ୍ରୀକ୍ଷେତ୍ରରେ ଜ୍ଞାନ ଓ ଭକ୍ତିରସ ବିତରଣ କରି ଯାଇଛନ୍ତି, ଯାହାଫଳରେ ଏହି ପ୍ରଦେଶରେ ଏକ ସମନ୍ୱିତ ସଂସ୍କୃତିର (Composite Culture) ବିକାଶ ସମ୍ଭବ ହୋଇପାରିଛି ।

ବିଶିଷ୍ଟ ପ୍ରାଚ୍ୟବିଦ୍ ଡକ୍ଟର ଜେ.ଡି. ବୋଲଟନ୍ ଓଡ଼ିଶାର ସାଂସ୍କୃତିକ ବୈଶିଷ୍ଟ୍ୟ ସମ୍ବନ୍ଧରେ ନିଜର ଏକ ଅଭିମତ ଦେବାକୁ ଯାଇ ଲେଖିଛନ୍ତି "ଓଡ଼ିଶାରେ ଏପରି **ଗୋଟେ କିଛି ମିଳୁଥିଲା, ଯାହାକି ବଙ୍ଗଳାରେ ଦୁର୍ଲଭ ଥିଲା । ତା' ହେଉଛି ସହିଷ୍ଣୁତା । ଯେଉଁ ଜାତୀୟତାବାଦ ବଙ୍ଗଳାରେ ଗତ ଶତାବ୍ଦୀରେ ଗଢ଼ି ଉଠିଲା, ତାହାର ମୂଳଉତ୍ସ ହେଲା ଅନେକାଂଶରେ ତୀବ୍ର ଅସହିଷ୍ଣୁତା, ତୀବ୍ର ସାଂପ୍ରଦାୟିକତା ଏବଂ ତୀବ୍ର ରକ୍ଷଣଶୀଳତା । ସେଥିପାଇଁ ବଙ୍ଗଳା ଫାଟିଫୁଟି ଖଣ୍ଡବିଖଣ୍ଡ ହୋଇ ଏତେ ଛୋଟ ହୋଇଯାଇଛି, ଠିକ୍ ମୋ ଇଂଲଣ୍ଡ ପରି । ଦୁର୍ଭାଗ୍ୟକ୍ରମେ ତା' ହେଉଛି ଅତି ଗର୍ବର ଫଳ । କିନ୍ତୁ ଓଡ଼ିଶାରେ ସେପରି ଗର୍ବ, ସେପରି ସାଂପ୍ରଦାୟିକତା ନଥିଲା । ବଙ୍ଗାଳୀ, ମରାଠୀ, ଓଡ଼ିଆ, ଖ୍ରୀଷ୍ଟିୟାନ, ମୁସଲମାନ ଜାତିଧର୍ମ ନିର୍ବିଶେଷରେ ସମସ୍ତେ ମିଳିମିଶି ଜାତୀୟ ଆନ୍ଦୋଳନରେ ଅଂଶ ଗ୍ରହଣ କରୁଥିଲେ ।**

**ଓଡ଼ିଆ ଜାତୀୟତାବାଦୀ ମଧ୍ୟରେ ପ୍ରଧାନ କଥା ଥିଲା ଯେ ସମସ୍ତେ ଓଡ଼ିଶାକୁ ସେମାନଙ୍କର ମାତୃଭୂମି ବୋଲି ସ୍ୱୀକାର କରି ନେଇଥିଲେ ଓ ସେମାନଙ୍କର ମାତୃଭାଷା ଓଡ଼ିଆ ବୋଲି ଭାବି ନେଇଥିଲେ । ତେଣୁ ମୋର ମନେ ହେଉଛି ଯେପରିକି ଓଡ଼ିଶାରେ ଏପରି ଗୋଟିଏ ଶକ୍ତିଥିଲା ଯାହା ବିଦେଶୀମାନଙ୍କର ହୃଦୟକୁ କିଣି ପାରୁଥିଲା ।''**

ଓଡ଼ିଶାର କଳା ଭାସ୍କର୍ଯ୍ୟର କୌଶଳ ଓ ଦକ୍ଷତାର ପ୍ରତଚ୍ଛବି ତାହାର କୋଣାର୍କ, ଜଗନ୍ନାଥ, ଲିଙ୍ଗରାଜ, ମୁକ୍ତେଶ୍ୱର, ରାଜାରାଣୀ ପ୍ରଭୃତି ମନ୍ଦିର ଗାତ୍ରରେ ପ୍ରସ୍ଫୁଟିତ । ସେହି ସବୁ ମନ୍ଦିରର କାରୁକାର୍ଯ୍ୟ ଦେଖିଲେ ଓଡ଼ିଆ ସଂସ୍କୃତିର ସୌନ୍ଦର୍ଯ୍ୟବୋଧ ଯେ କେତେ ଉନ୍ନତ ଥିଲା, ତାହା ସହଜରେ ଜଣାପଡ଼େ । ଚାର୍ଲସ୍ ଫେବ୍ରି ତାଙ୍କ "History of Art of Orissa" ପୁସ୍ତକରେ ଓଡ଼ିଶାର ଉନ୍ନତା କଳା ଭାସ୍କର୍ଯ୍ୟର ଭୂୟସୀ ପ୍ରଶଂସା କରିଛନ୍ତି । ଓଡ଼ିଶୀ ନୃତ୍ୟ ଆଜି ସାରା ପୃଥିବୀରେ ପ୍ରଶଂସିତ । ଓଡ଼ିଶାର ଛଉନୃତ୍ୟ, ଘୁମୁରା ନୃତ୍ୟ ପ୍ରଭୃତି ଦର୍ଶକ, ପର୍ଯ୍ୟଟକମାନଙ୍କୁ ମନ୍ତ୍ରମୁଗ୍ଧ କରି ପକାଏ । ଓଡ଼ିଶାର ଲୋକ-ନାଟ୍ୟ ମଧ୍ୟରେ ମୋଗଲ ତାମସା, ପ୍ରହ୍ଲାଦ ନାଟକ ଓ ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟ ସାରା ଭାରତରେ ଓ ବିଦେଶରେ ମଧ୍ୟ ନାଟ୍ୟ ଜଗତରେ ଆଲୋଚନା ସୃଷ୍ଟି କରିପାରିଛି । ଓଡ଼ିଶାର ତାରକସୀ, ହାତବୁଣା ଶାଢ଼ୀ, ଓଡ଼ିଶାର ପଟ୍ଟଚିତ୍ର, ଓଡ଼ିଶାର ଚାନ୍ଦୁଆ ପ୍ରଭୃତି ହସ୍ତଶିଳ୍ପ ଓଡ଼ିଆ କାରିଗରର କଳାତ୍ମକ ଉତ୍କର୍ଷତା ପ୍ରତିପାଦନ କରେ । ଦିନ ଥିଲା ଓଡ଼ିଆ ନୌ-ବାଣିଜ୍ୟ କ୍ଷେତ୍ରରେ ଉତ୍କର୍ଷ ସାଧନ କରି ସୁଦୂର ଜାଭା, ସୁମାତ୍ରା, ସିଂହଳ ପ୍ରଭୃତି ଦେଶରେ ଆଧିପତ୍ୟ ବିସ୍ତାର କରିଥିଲା । ପିପିଲି, ତାମ୍ରଲିପ୍ତ, ବାଲେଶ୍ୱର ପ୍ରଭୃତି ବନ୍ଦର ଗୁଡ଼ିକ ଓଡ଼ିଆ ନୌ-ବାଣିଜ୍ୟର ପ୍ରଧାନ କେନ୍ଦ୍ରସ୍ଥଳୀ ହୋଇଥିଲା ।

ଓଡ଼ିଶାର ସାଂସ୍କୃତିକ ଜୀବନ ଆଲୋଚନା କଲେ ଆମେ ଜାଣିପାରିବା ଯେ, ଓଡ଼ିଶାର ବାର ମାସରେ ତେର ପର୍ବ ମଧ୍ୟରେ ଏକ କର୍ମମୁଖର ସାମାଜିକ ରୀତିନୀତିର ଉତ୍ସବ ଦେଖିବାକୁ ମିଳେ । ଯାହା ମଧ୍ୟରେ ଜୀବନ ପ୍ରତି ଗଭୀର ମମତ୍ୱବୋଧ, ସାମାଜିକ ବିନମ୍ରତା ଓ ଆତିଥ୍ୟପରାୟଣତା ଦେଖିବାକୁ ମିଳେ, ତାହା ପ୍ରତିବେଶୀ ପ୍ରଦେଶମାନଙ୍କରେ ବିରଳ । ଓଡ଼ିଶା ପ୍ରଦେଶର ପ୍ରାୟ ଚାରି କୋଟି ଅଧିବାସୀ ମଧ୍ୟରୁ ଏକକୋଟି ଆଦିବାସୀ । ସେହି ଓଡ଼ିଆ ଆଦିବାସୀଙ୍କ ମଧ୍ୟରେ ଜୀବନ ପ୍ରତି ମମତା, ପ୍ରକୃତି ପ୍ରେମ ଓ ନୃତ୍ୟ ସଙ୍ଗୀତ ପ୍ରତି ଅନୁରାଗ ଦେଖିବାକୁ ମିଳେ । ଦୁଃଖ ଓ ଦାରିଦ୍ର୍ୟ ମଧ୍ୟରେ ମଧ୍ୟ ସେମାନେ ସେମାନଙ୍କର ଲୋକ-ସଙ୍ଗୀତ ଓ ଲୋକ-ନୃତ୍ୟକୁ ଭୁଲି ନାହାଁନ୍ତି । ସେମାନଙ୍କର ଲୋକ-ସଙ୍ଗୀତ ମଧ୍ୟରେ ପ୍ରେମ, ମୃତ୍ୟୁ ଉପରେ ଜୀବନର ସାମଗ୍ରିକ ଅନୁଭୂତି ଅତି ସୁନ୍ଦର ଭାବରେ ପ୍ରକାଶିତ ।

ଏପରି ଏକ ଉନ୍ନତ ସାଂସ୍କୃତିକ ପରମ୍ପରା ଆଜି ସଙ୍କଟ ମଧ୍ୟରେ ଗତି କରୁଛି । ସ୍ୱାଧୀନତା ପରେ ଆମ ଓଡ଼ିଆ ସଂସ୍କୃତିର ପରିବର୍ତ୍ତିତ ରୂପ କଥା ଆଲୋଚନା କଲେ ଏହି ସାଂସ୍କୃତିକ ସଙ୍କଟର ସ୍ୱରୂପକୁ ଉପଲବ୍ଧି କରିପାରିବା । ଏହି ସଙ୍କଟକୁ ଠିକ୍ ଭାବରେ ଉପଲବ୍ଧି କରିପାରିଲେ ଓଡ଼ିଆ ସଂସ୍କୃତିର ଅବକ୍ଷୟର ଧାରାକୁ ପ୍ରତିହତ କରିହେବ ଏବଂ ଓଡ଼ିଆ ସଂସ୍କୃତିର ବିକାଶ ଓ ସୁରକ୍ଷା ପାଇଁ ଗଠନମୂଳକ ପଦକ୍ଷେପ ନିଆଯାଇ ପାରିବ ।

ବିଶିଷ୍ଟ ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସଂସ୍କୃତି ପ୍ରବନ୍ଧରେ ଓଡ଼ିଆ ସଂସ୍କୃତିର ସାଂସ୍କୃତିକ ଅବକ୍ଷୟର ଏକ ନିଖୁଣ ଚିତ୍ର ଦେଇଛନ୍ତି । ତାଙ୍କ ମତରେ''ଏ ଓଡ଼ିଆ ସାଂସ୍କୃତିକ ବିକାଶ ମୁଖ୍ୟତଃ ପ୍ରଚାରମୁଖୀ ହୋଇଛି । ଆଜି କିଛି କରିବା, କାଲି ତାହାର ଫଳ ସ୍ୱରୂପ ଖବର କାଗଜରେ ନାମ ଦେଖିବା ବା ସଭାସମିତିରେ ପ୍ରଶସ୍ତି ଶୁଣିବା ଆମ୍ଭମାନଙ୍କ ଜୀବନର ପରମ କାମ୍ୟ ହୋଇଉଠୁଛି ।'' ତାଙ୍କ ମତରେ ସ୍ୱାଧୀନତା ପ୍ରାପ୍ତିଠାରୁ 'ସର୍ବଧର୍ମ ସମନ୍ୱୟ'ର ପରମ୍ପରା ଭାଙ୍ଗି ପଡ଼ୁଛି ଓ ତଦ୍ ସଙ୍ଗେସଙ୍ଗେ ଓଡ଼ିଆ ସଂସ୍କୃତିର ଏକ ସୁଦୃଢ଼ ସ୍ତମ୍ଭ ଦୋହଲି ଯାଇଛି । ଏହା ପରିବର୍ତ୍ତେ ଭଗବାନଙ୍କର ଅବତାର ସଂଖ୍ୟା ବଢ଼ି ଚାଲିଛି । ସେହିପରି ଓଡ଼ିଆ ପର୍ବପର୍ବାଣୀର ଆଡ଼ମ୍ବର ବହୁ ପରିମାଣରେ ବଢ଼ି ଯାଇଛି । ବ୍ୟୟ ବହୁଳ ଭୋଜି, ଆଡ଼ମ୍ବରପୂର୍ଣ୍ଣ ଶୋଭାଯାତ୍ରା, ଦୁର୍ଗାପୂଜା, ଗଣେଶ ପୂଜା ପ୍ରଭୃତି ପର୍ବପର୍ବାଣୀର ପ୍ରଧାନ ଅଙ୍ଗ ହୋଇଛି । ଏସବୁ ଆଡ଼ମ୍ବର ମଧ୍ୟରେ ଧର୍ମଭାବ ହ୍ରାସ ପାଉଛି । ଅନ୍ୟ ପ୍ରଦେଶ ସହ ତୁଳନା କଲେ ଓଡ଼ିଶାର ଶିକ୍ଷା, ଓଡ଼ିଶାର ଗମନାଗମନ ପଥ ଓ ଓଡ଼ିଶାର ଅର୍ଥନୈତିକ ଅଗ୍ରଗତି ବହୁ ପଛରେ ପଡ଼ିଛି । ଓଡ଼ିଶାର ପରମ୍ପରା, ଐତିହ୍ୟ ଓ ଓଡ଼ିଆ ସାହିତ୍ୟ ସଂସ୍କୃତି ବୈଶିଷ୍ଟ୍ୟର ପ୍ରଚାର ଓ ପ୍ରସାର ପରିବର୍ତ୍ତେ ଭାରତର ଖବରକାଗଜରେ କେବଳ ଆମେ ଓଡ଼ିଆର ଦୁଃଖ ଦାରିଦ୍ର୍ୟ, ଅନାହାର, ଶ୍ରମିକର କରୁଣ ଚିତ୍ରର ବର୍ଣ୍ଣନା ହିଁ ଦେଖିବାକୁ ପାଉଛୁ । ଆମ ସାହିତ୍ୟ ସଂସ୍କୃତିର ମହତ୍ତ୍ୱଗୁଡ଼ିକୁ ଅନ୍ୟ ପ୍ରଦେଶରେ ପରିଚିତ କଲାଭଳି ଆମର ପ୍ରଚେଷ୍ଟା କ୍ଷୀଣରୁ ଅତି କ୍ଷୀଣତର ହୋଇ ଆସୁଛି । ଏହା ହେଉଛି ବାସ୍ତବିକ ଓଡ଼ିଆ ଜାତୀୟ ଜୀବନର ଦୁଃଖଦାୟକ ଘଟଣାମାନ । ତେଣୁ ଓଡ଼ିଆ ସଂସ୍କୃତିର ସୁରକ୍ଷା ପାଇଁ ମୋ ମତରେ ନିମ୍ନଲିଖିତ ଗଠନମୂଳକ ପଦକ୍ଷେପମାନ ଗ୍ରହଣ କରାଯିବା ଉଚିତ୍ । ଏ ଦିଗରେ ଓଡ଼ିଶାର ପୁରପଲ୍ଲୀରେ ଏକ ସାଂସ୍କୃତିକ ନବଜାଗରଣ ସୃଷ୍ଟି କରାଯିବା ଉଚିତ୍ ।

ପ୍ରଥମତଃ ଭୂମିହୀନ, ଗୃହହୀନ, ଦରିଦ୍ର ଆଦିବାସୀମାନଙ୍କୁ ଘର ଡିହ ଓ ଚାଷୋପଯୋଗୀ ଜମି ଯୋଗାଇ ଦେଇ ସେମାନଙ୍କୁ ସ୍ୱାବଲମ୍ବୀ କରିବାକୁ ପଡ଼ିବ । ଓଡ଼ିଶାର ଦରିଦ୍ର ଆଦିବାସୀ ଜୀବନ ପ୍ରଣାଳୀ ମଧ୍ୟରେ ଯେଉଁ ଲୋକନୃତ୍ୟର ଉନ୍ନତ କଳା ରହିଛି, ତାହାର ଓଡ଼ିଆ ସଂସ୍କୃତିର ଏକ ବିଶିଷ୍ଟ ଅଙ୍ଗ । ଏହି ଆଦିବାସୀ ସଂସ୍କୃତିର

ଅମୂଲ୍ୟ ସମ୍ପଦଗୁଡ଼ିକର ସୁରକ୍ଷା ଓ ସଂରକ୍ଷଣ ପାଇଁ ବଳିଷ୍ଠ କର୍ମପନ୍ଥା ଗ୍ରହଣ କରିବା ଉଚିତ୍ । ରାଜ୍ୟ ସଂଗ୍ରହାଳୟ ଓ ଆଦିବାସୀ ଗବେଷଣା କେନ୍ଦ୍ର ଏ ଦିଗରେ ମୁଖ୍ୟ ଦାୟିତ୍ୱ ନେଇ ପାରିବ ।

ଓଡ଼ିଆ ଭାଷାଭାଷୀ ଅଧ୍ୟୁଷିତ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଓଡ଼ିଆ ପୁରାତନ ସଂସ୍କୃତିର ବହୁ ସ୍ମୃତି ଫଳକ ଯଥା : ବହୁ ତାମ୍ରପତ୍ର, ତମ୍ବା ପଟା, ଶିଳାଲେଖ, ଅଭିଲେଖ ଅବହେଳିତ ହୋଇ ନଷ୍ଟ ଓ ବିନଷ୍ଟ ହୋଇଯାଉଛି । ଏଗୁଡ଼ିକ ଓଡ଼ିଆ ସଂସ୍କୃତିର ଅମୂଲ୍ୟ ସମ୍ପଦ । ଏଗୁଡ଼ିକର ପୁନଃରୁଦ୍ଧାର, ସୁସମ୍ପାଦନା ଓ ସଂରକ୍ଷଣ ଏକାନ୍ତ ଆବଶ୍ୟକ । ଏ ଦିଗରେ ଓଡ଼ିଶାର ସ୍ୱେଚ୍ଛାସେବୀ ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକ ମିଳିତ ଉଦ୍ୟମ କରିବା ଉଚିତ୍ । ଓଡ଼ିଶାର ପୁରପଲ୍ଲୀରେ ଧ୍ୱଂସମୁଖୀ 'ଭାଗବତ ଟୁଙ୍ଗୀ'ର ପୁନଃରୁଦ୍ଧାର ହେବା ଉଚିତ୍ । ଓଡ଼ିଶା ଜନସଂଖ୍ୟାର ପ୍ରାୟ ପଚାଶ ଭାଗ ଲୋକ ଏବେ ବି ନିରକ୍ଷର ଓ ଦରିଦ୍ର । ନିରକ୍ଷରତା କୁସଂସ୍କାର, ପ୍ରତିକ୍ରିୟାଶୀଳତା ବୃଦ୍ଧି କରିଥାଏ । ଏଣୁ ଏକବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାରୁ ଯେପରି ନିରକ୍ଷରତା ସଂପୂର୍ଣ୍ଣ ରୂପେ ଦୂର ହୋଇପାରିବ, ସେଥିପାଇଁ ଏକ ବଳିଷ୍ଠ ପଦକ୍ଷେପ ଗ୍ରହଣ କରାଯିବା ଉଚିତ୍ ।

ଓଡ଼ିଆ ସାହିତ୍ୟକୁ ଦୁର୍ବୋଧତା, ଉଦ୍‌ଭଟତା ଓ ସାମନ୍ତବାଦୀ ଚିନ୍ତାଧାରାରୁ ମୁକ୍ତ କରି ଆମ ସାହିତ୍ୟକୁ ଗଣମୁଖୀ ଓ ପ୍ରଗତିଶୀଳ କରିବାକୁ ହେବ ଏବଂ ପାଠାଗାର ଆନ୍ଦୋଳନ ମାଧମରେ ଓଡ଼ିଶାର ପ୍ରତି ପଞ୍ଚାୟତରେ ପାଠାଗାର ପ୍ରତିଷ୍ଠା କରି ଓଡ଼ିଆ ସାହିତ୍ୟର ପାଠକ ସଂଖ୍ୟାକୁ ବଢ଼ାଇବାକୁ ପଡ଼ିବ । ତା'ନହେଲେ ସାହିତ୍ୟ କେବଳ କଟକ, ଭୁବନେଶ୍ୱର, ବାଲେଶ୍ୱର ଓ ସମ୍ବଲପୁର ପ୍ରଭୃତି କେତୋଟି ସହର ମଧରେ ସୀମିତ ରହିଯିବ ।

ଗୋଟିଏ ଜାତିର ଐତିହ୍ୟ, ସଂସ୍କୃତି, ଅଭିବୃଦ୍ଧି, ତାହାର ଭାଷା ସଂପଦର ଅଭିବୃଦ୍ଧି ଉପରେ ନିର୍ଭର କରେ । ଆଜିସୁଦ୍ଧା ଓଡ଼ିଆ ଭାଷାର ଏକ ଶବ୍ଦକୋଷ ପ୍ରକାଶିତ ହୋଇପାରି ନାହିଁ । ସାରଳା ଯୁଗରୁ ବ୍ୟବହୃତ ହୋଇ ଆସୁଥିବା ଅନେକ ଓଡ଼ିଆ ନିର୍ଦ୍ଦିଷ୍ଟ ଦେଶଜ ଶବ୍ଦ, ଢ଼ମଢ଼ମାଳି ଆମର ଶିକ୍ଷିତ ଭାଇ-ଭଉଣୀମାନେ ଭୁଲି ଗଲେଣି । ସେହି ପାଶୋରି ଯାଉଥିବା ଶବ୍ଦଗୁଡ଼ିକ ର ପୁନରୁଦ୍ଧାର କରି ଓଡ଼ିଆ ଭାଷାର ଏକ ବୃହତ୍ ଭାଷାକୋଷ ପ୍ରସ୍ତୁତ କରିବା ନିତାନ୍ତ ଆବଶ୍ୟକ ।

ଦୁଃଖର କଥା ଓଡ଼ିଶା ପ୍ରଦେଶର ବାହାରେ ଓଡ଼ିଶା ଅଧିବାସୀମାନଙ୍କର ସାଂସ୍କୃତିକ ବିକାଶ ପାଇଁ ପ୍ରତିବେଶୀ ବିହାର, ଆନ୍ଧ୍ରପ୍ରଦେଶରେ ରହୁଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଥିବା ସ୍କୁଲ କଲେଜମାନଙ୍କରେ ଓଡ଼ିଆ ଭାଷାର ପ୍ରଚଳନ ଏବେ ବି ହୋଇନି । ଏଥିପାଇଁ ଗଠନମୂଳକ ଏକ ପଦକ୍ଷେପ ଗ୍ରହଣ କରାଯିବା ଉଚିତ୍ । ସିଂହଭୂମି, ଷଢ଼େଇକଳା

ପ୍ରଭୃତି ଅଞ୍ଚଳରେ ଥିବା ସ୍କୁଲମାନଙ୍କରେ ଓଡ଼ିଆ ଭାଷାର ପ୍ରଚଳନ ଓ ପ୍ରବର୍ତ୍ତନ ପାଇଁ ଉଦ୍ୟମ ହେବା ଉଚିତ୍ । ଓଡ଼ିଆ ଭାଷାକୁ ସରକାରୀ ଓ ବେସରକାରୀ କ୍ଷେତ୍ରରେ ବ୍ୟବହାର ପାଇଁ ଜନସଚେତନତା ସୃଷ୍ଟି ହେବା ଉଚିତ୍ । ଦୁଃଖର କଥା ଏବେ ମଧ୍ୟ ଓଡ଼ିଆ ଭାଷା ସରକାରୀ ଅଫିସ୍, କଚେରୀରେ ସଂପୂର୍ଣ୍ଣ ଭାବରେ ପ୍ରଚଳିତ ହୋଇନାହିଁ ।

ପ୍ରବାସୀ ଓଡ଼ିଆମାନଙ୍କ ମଧ୍ୟରେ ସ୍ୱାଭିମାନ ଓ ସ୍ୱକୀୟ ସାଂସ୍କୃତିକ ଚେତନା ସୃଷ୍ଟି କରିବାପାଇଁ ପ୍ରତିବର୍ଷ ଉତ୍କଳ ସାଂସ୍କୃତିକ ସମାରୋହ ଅନୁଷ୍ଠିତ ହେବା ଉଚିତ୍ । ଓଡ଼ିଆମାନଙ୍କ ମଧ୍ୟରେ ଏ ଭାବଗତ ସଂହତିର ଅଭିବୃଦ୍ଧି ପାଇଁ ଓଡ଼ିଶୀ ନୃତ୍ୟ, ଗୀତର ସମାରୋହ ଓ ଅନ୍ୟାନ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମମାନ ପ୍ରତିବର୍ଷ ଏକାଧିକବାର ଓଡ଼ିଶାର ବିଭିନ୍ନ ପ୍ରାନ୍ତରରେ ଉଦ୍‌ଯାପିତ ହେବା ଉଚିତ୍ ।

ଓଡ଼ିଆମାନଙ୍କ ମଧ୍ୟରେ ଭାବଗତ ସଂହତିର ପ୍ରଧାନ ଅନ୍ତରାୟ ହେଉଛି ଗମନାଗମନ ପଥର ଘୋର ଅଭାବ । ପ୍ରତିବେଶୀ ପ୍ରଦେଶ ଗୁଡ଼ିକରେ ରେଳପଥର ପ୍ରସାର ଦ୍ରୁତ ଗତିରେ ହୋଇ ଚାଲିଥିବାବେଳେ ଓଡ଼ିଶାରେ ଗମନାଗମନ ପଥର ସ୍ଥାଣୁତ୍ୱ, ଅନଗ୍ରସରତା ଆମର ସାମୂହିକ ପ୍ରଗତିର ଅନ୍ତରାୟ ହୋଇଉଠୁଛି । ଏବେ ମଧ୍ୟ ଓଡ଼ିଶାର ଅନେକ ଜିଲ୍ଲା ଅଛି ଯେଉଁଠାରେ ଲୋକମାନେ ରେଳପଥରେ ଗମନାଗମନର କୌଣସି ସୁବିଧା ପାଇପାରୁ ନାହାଁନ୍ତି । ଏ ଦିଗରେ ଏକ ବିଧିବଦ୍ଧ ଜନ ଆନ୍ଦୋଳନାତ୍ମକ କାର୍ଯ୍ୟପନ୍ଥା ଗ୍ରହଣ କରିବା ଉଚିତ୍ । ସର୍ବୋପରି ଓଡ଼ିଆମାନଙ୍କ ମଧ୍ୟରେ ଚିରାଚରିତ କୁସଂସ୍କାର, ହୀନମନ୍ୟତା, ଉଦାସୀନତା ଦୂରକରି ଉଚ୍ଚାଭିଳାଷ ସୃଷ୍ଟି କରିବାକୁ ହେବ, ଯାହା ଫଳରେ ଓଡ଼ିଶାର ପ୍ରଗତି ତ୍ୱରାନ୍ୱିତ ହୋଇପାରିବ । ଗୋଟିଏ ଜାତିର ଉତ୍‌ଥାନ ଓ ସାମଗ୍ରିକ ପ୍ରତିଷ୍ଠା ଦିଗରେ ଏକ ବୃହତ୍ତର ଦୃଷ୍ଟିଭଙ୍ଗୀ ବା ଆତ୍ମ-ଜିଜ୍ଞାସା ଏକାନ୍ତ ଆବଶ୍ୟକ । ମନ ମଧ୍ୟରୁ ଆଞ୍ଚଳିକ ମନୋଭାବ ଦୂର କରିବାପାଇଁ ରାଜନୀତିଜ୍ଞ, ସାହିତ୍ୟିକ, ବୁଦ୍ଧିଜୀବୀ ଓ ସାମ୍ବାଦିକମାନେ ଆନ୍ତରିକ ଭାବରେ ଚେଷ୍ଟା କରିବା ଉଚିତ୍ । ଦିନେ ଡକ୍ଟର. ମାୟାଧର ମାନସିଂହ କହିଥିଲେ ଯେ ସନ୍ନ୍ୟାସୀ ସୁଲଭ ଭାଗ୍ୟବତୀ ମନୋଭାବ ଗୋଟିଏ ଜାତିର ଅଭ୍ୟୁଦ୍‌ଥାନ କରାଇପାରେ ନାହିଁ । ସେ ଦୃଢ଼ କଣ୍ଠରେ କହିଥିଲେ, 'ଏ ଜାତିର ଅଭ୍ୟୁଥାନ ଯେଉଁମାନେ ଚାହାଁନ୍ତି, ସେମାନଙ୍କର ମନେ ରଖିବାକୁ ହେବ ଯେ, ଉପବାସ, ନାମକୀର୍ତ୍ତନ, ସୂତାକଟା ଭାଗବତ ପାଠରେ କୌଣସି ଜାତି ଉଠିନି, ଏ ଜାତି ଉଠିବା ଅସମ୍ଭବ । ବହୁଶତ ବର୍ଷ ହେଲା ଏ ପାଲାର ପରୀକ୍ଷା ହେଲା ଏବଂ ଫଳ ଦେଖାଯାଉଛି ଅତ୍ୟନ୍ତ ଭୟାବହ । ବର୍ତ୍ତମାନ ନୂତନ ଧର୍ମର ପ୍ରଚାର ଆବଶ୍ୟକ । ଏହି ଧର୍ମ ମନୁଷ୍ୟର ଜୀବନ ଶକ୍ତିକୁ, ତା'ର ସ୍ୱାଭିମାନକୁ ଉଦ୍‌ବୁଦ୍ଧ କରି ଦ୍ୱିଧାହୀନ ଭାବରେ ସ୍ୱେଦ ଓ ରକ୍ତ ଦେବାକୁ ପ୍ରେରଣା ଦେଇ ହୃଦୟରେ ଆତ୍ମବିଶ୍ୱାସ ଓ ମନରେ ଉଚ୍ଚାଭିଳାଷ ଆଣିଦେବ । ଏହି ଧର୍ମରେ ହିଁ ଏ ଜାତିର ମୁକ୍ତି, ଉତ୍‌ଥାନ ସମ୍ଭବ । ମୋର ଇଚ୍ଛା, ଉତ୍କଳର

ପ୍ରତ୍ୟେକ ତରୁଣ ଏହି ଜୀବନ ଧର୍ମରେ ଦୀକ୍ଷିତ ହୋଇ ଖାରବେଳ, କପିଳେନ୍ଦ୍ର, ପୁରୁଷୋତ୍ତମ, ନରସିଂହଙ୍କ ଗୌରବକୁ ଏ ଭୂମିରେ ପୁଣି ସତ୍ୟ କରନ୍ତୁ । ଓଡ଼ିଆ ମନ ମଧ୍ୟରୁ ହୀନମନ୍ୟତା ଦୂର କରି ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଏକ ନବ ଜାତୀୟ ଚେତନା ସୃଷ୍ଟି କରିବାକୁ ହେବ ।

ଜଣେ ଉତ୍କଳୀୟ ସ୍ୱାଭିମାନୀ ଲେଖକ ହିସାବରେ ମୋର ଓଡ଼ିଆ କଳା ଓ ସାହିତ୍ୟ ସଂସ୍କୃତି ଓଡ଼ିଆ ଭାଇ-ଭଉଣୀମାନଙ୍କୁ ବିନମ୍ର ନିବେଦନ-ଓଡ଼ିଶା ପ୍ରଦେଶର ପ୍ରତ୍ୟେକ ଜିଲ୍ଲାରେ ଏବଂ ବିଚ୍ଛିନ୍ନାଂଚଳମାନଙ୍କରେ ''ସାରଳା ଭବନ'' ନାମରେ ଗୋଟିଏ ଗୋଟିଏ ସାଂସ୍କୃତିକ କେନ୍ଦ୍ରମାନ ଗଢ଼ିଉଠୁ ଯେଉଁଠାରେ ଓଡ଼ିଆ ଭାଷା ସଂସ୍କୃତି ଚର୍ଚ୍ଚା ହେବା ସଙ୍ଗେସଙ୍ଗେ ଓଡ଼ିଆ ପ୍ରେମୀମାନଙ୍କ ମଧ୍ୟରେ ଏକ ଭାବଗତ ସଂହତି ସୃଷ୍ଟି ହୋଇପାରିବ ଓ ଏହି ସାଂସ୍କୃତିକ ଭବନ ଗୁଡ଼ିକ ଓଡ଼ିଆ ସଂସ୍କୃତି ଓ ସଂହତିର ମିଳନ କେନ୍ଦ୍ର ରୂପେ ପ୍ରତିଷ୍ଠିତ ହୋଇପାରିବ । ଏ ଦିଗରେ ଓଡ଼ିଶାର ସମସ୍ତ ବୁଦ୍ଧିଜୀବୀ, ସମାଜସେବୀ, ଲେଖକ-ଲେଖିକା ଓ ବେସରକାରୀ ସାଂସ୍କୃତିକ ଅନୁଷ୍ଠାନର କର୍ମକର୍ତ୍ତାମାନେ ସମ୍ମିଳିତ ଭାବରେ ଗଠନମୂଳକ କାର୍ଯ୍ୟପନ୍ଥା ଗ୍ରହଣ କରିବା ଉଚିତ୍ ।

ଉତ୍କଳ ସମ୍ମିଳନୀ, ଉତ୍କଳ ସାହିତ୍ୟ ସମାଜ, ଗଞ୍ଜାମ କଳା ପରିଷଦ, ଫକୀର ମୋହନ ସାହିତ୍ୟ ପରିଷଦ ଓ କୋଶଳ ସାହିତ୍ୟ ପରିଷଦ ପ୍ରଭୃତି ପ୍ରତିଷ୍ଠିତ ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକ ଓଡ଼ିଶାର ସାଂସ୍କୃତିକ ବିକାଶ ଓ ସୁରକ୍ଷା ଦିଗରେ ଏକ 'ଓଡ଼ିଆ ଜାତୀୟ ଟ୍ରଷ୍ଟ' ଗଠନ କରିବା ଉଚିତ୍, ଯାହାର ମୂଳ ଉଦ୍ଦେଶ୍ୟ ହେବ ଜାତୀୟ ସଂସ୍କୃତିର ପୁନଃଜାଗରଣ-ଓଡ଼ିଆ ଭାଷା, ସାହିତ୍ୟ, କଳା ଓ ସଂସ୍କୃତିର ବିକାଶ ଓ ସୁରକ୍ଷା ।

ସର୍ବଶେଷରେ ଉତ୍କଳ ଗୌରବ ମଧୁସୂଦନଙ୍କ ଚେତାବନୀ କଥା ମନେ ରଖି ଓଡ଼ିଆ ଜାତୀୟତା ଆଦର୍ଶରେ ନିଜକୁ ଉଦ୍‌ବୁଦ୍ଧ ହେବାକୁ ପଡ଼ିବ ।

''ଜାତି ନନ୍ଦିଘୋଷ ଚଳିବ କି ଭାଇ
ସ୍ୱାର୍ଥକୁ ସାରଥି କଲେ ।
ଟାଣେ କିରେ ଗାଡ଼ି ଦାନାର ତୋବଡ଼ା
ଘୋଡ଼ା ମୁହେଁ ବନ୍ଧା ଥିଲେ ।''



# ଓଡ଼ିଶାରେ ଆଦିବାସୀ ନୃତ୍ୟର ସ୍ୱରୂପ

"And I am dumb of tell the crooked rose
My youth is bent by the same wintry fever
Short-lived is the dance of the old man
Meagre the flesh of the barking deer."

(Dylan Thomas)

**ଆଦିବାସୀ ନୃତ୍ୟର ସ୍ୱରୂପ :**

ମାଘ ମାସର ପୁନେଇଁ ଜହ୍ନ ଆଲୋକରେ ଝରଣାର ଜଳ ଚିକ୍ ଚିକ୍ କରୁଛି । ଚତୁର୍ଦ୍ଦିଗରେ ସବୁଜ ଅରଣ୍ୟ । କି ସୁନ୍ଦର ସେ ଅରଣ୍ୟର ଶୋଭା । ଅଦୂରରେ ଏକ ନିସ୍ତବ୍ଧ ଜନପଦରୁ ହଠାତ୍ ଝଙ୍କୃତ ହୋଇଉଠେ ଏକ ମାଦକଭରା ନୃତ୍ୟର ଝଙ୍କାର । ପଥଶ୍ରାନ୍ତ ପରିବ୍ରାଜକ ମନ୍ତ୍ରମୁଗ୍ଧ ହୋଇ ସେଇ ପାହାଡ଼ଘେରା ଜନପଦର ନୃତ୍ୟସ୍ଥଳୀ ପ୍ରତି ଆକୃଷ୍ଟ ହୁଏ । ସେ ଧୀରେଧୀରେ ପାଦ ବଢ଼ାଏ ସେଇ ଜନପଦ ଆଡ଼କୁ । ସେ ଆଖି ଖୋଲି ଟିକିଏ ଦେଖିବ ସେ ନୃତ୍ୟ । ପ୍ରାଣଭରି ଅନୁଭବ କରିବ ସେ ନୃତ୍ୟର ମାଦକତା । ସେ ନୃତ୍ୟ 'କନ୍ଧନୃତ୍ୟ' । କନ୍ଧର ଧାଙ୍ଗଡ଼ା ଧାଙ୍ଗଡ଼ୀ ନୃତ୍ୟ ସମାରୋହରେ ଅଭିଆଡ଼ି କନ୍ଧ ଝିଅମାନେ ଓ ଅଭିଆଡ଼ା କନ୍ଧ ପୁଅମାନେ ମନମତାଣିଆ ଗୀତ ଗାଇ ନାଚନ୍ତି । ଅତି ମଧୁର ସ୍ୱରରେ ଧାଙ୍ଗଡ଼ୀ ଗୀତ ଗାଏ – ମାଘ ପର୍ବର ଗୀତ –

**''ଢେଇ ମାଲା ଆଦ୍‌ଲେ, ଡେଣାୟା ତଲା କିନାରା
ଢେଇ ମାଲା ଆଦ୍‌ଲେ ଡେଣାୟା
ନେଇ ମାଲା ଢୁମ୍ବର (୧) ଡେଣାୟ ଢଲ, କିନାରା
ଢେଇମାଲା ଢୁମ୍ବର
ଢୁନାବାଢୁ ନ କିଣ, ଡେଣାୟା ଢାଲ କିନାରା
ଢୁନାବାଢୁ ନକିଣ,**

**ଆଲୋ ଢୁବ୍ରୁ, ଡାଡ଼ିଲେ, ଡେଣୟା ଜାଲ କିନାରା**
**ଆଲୋ ଢୁଂବ୍ରୁ, ଡାଡ଼ିଲେ... ।''**

ଏହି ନୃତ୍ୟ-ଗୀତର ଭାବାର୍ଥ ଅତି ଚିତ୍ତାକର୍ଷକ ଓ ମନୋମୁଗ୍ଧକର । ଧାଙ୍ଗଡ଼ୀ ଗୀତ ମାଧ୍ୟମରେ ତା' ମନ କଥା କହେ - **''ବନ୍ଧୁ ! ଆମର କେହି ପ୍ରଜା ନାହିଁ, ଆମେ କାହାର ପ୍ରଜା ନୋହୁଁ । ଆମେ ମତୁଆଲା ହୋଇ ନାଚିବୁ । କେହି ଘରେ ରହିବୁନି । ଆସ ନାଚିବା ଆସ । ଆମେ କାହାରିକୁ ଭୟ କରିବୁନି-ଘାତକ ଆସିଲେ ମଧ୍ୟ । ଆମେ ସଙ୍ଗୀତର ତାଳେତାଳେ ନାଚିବୁ-ସବୁ ଦୁଃଖକୁ ଭୁଲି । ଆସୁ ଝଡ଼ ତଥାପି ନାଚିବୁ-ନାଚିନାଚି ଥକିବୁନି । ବଡ଼ମାନଙ୍କ ଆଗରେ ମଧ୍ୟ ନାଚିବୁ ପ୍ରାଣ ସ୍ଫୁର୍ତ୍ତିରେ । କାହାକୁ ଭୟ କରିବୁନି । ଆମେ ନାଚିବୁ ଆମରି ଗାଁରେ । ଆସ ଭାଇ ଭଉଣୀମାନେ, ଆସ ନାଚିବା । ବାପ, ମା' ଅନ୍ୟମାନେ, ଆମକୁ ଉପହାସ କଲେ ମଧ୍ୟ ଆମେ ନାଚିବୁ । ବୟସର ସୀମା ଆମେ ମାନିବୁ ନାହିଁ । ସମ୍ମାନ, ପଦ-ପଦବୀକୁ ଭୁଲି ଆମେ ସଙ୍ଗୀତର ତାଳେତାଳେ ଅଧିକରୁ ଅଧିକ ନାଚିବୁ ।''**

କି ପ୍ରାଣ ସ୍ଫୁର୍ତ୍ତି, କି ଉଦ୍ଦାମତା ଏହି ଆଦିବାସୀ ନୃତ୍ୟର ମୂର୍ଚ୍ଛନାରେ । ଆଦିବାସୀ କନ୍ଧ, ଭୁଲିଯାଏ - ତା'ର ସବୁ ଦୁଃଖ, ଭୟ ଓ ନିର୍ଯ୍ୟାତନାକୁ ଏହି ନୃତ୍ୟର ଆନନ୍ଦ ମଧ୍ୟରେ । ନୃତ୍ୟର ତାଳେତାଳେ ସେ ପିଇଯାଏ-ତା'ର ଜୀବନ ଯନ୍ତ୍ରଣାର ଲୁହଲହୁକୁ । ସେ ନାଚିନାଚି ଆତ୍ମବିଭୋର ହୁଏ । ଜୀବନ ହିଁ ଅମୃତ, ନୃତ୍ୟ ହି ଜୀବନ । ଏହି ନୃତ୍ୟ ମାଧ୍ୟମରେ  ସେ ଜୟ କରେ ଅରଣ୍ୟର ଅନ୍ଧାରକୁ, ଦେବତାର ଭୟକୁ, ମହାମାରୀର କରାଳତାକୁ । ସେ ଯେ 'ଅମୃତର ସନ୍ତାନ'- କନ୍ଧ, ''ସରବୁ ସାଆନ୍ତ'' ବୃଦ୍ଧ ହୋଇଥିଲେ ମଧ୍ୟ ତା'ଜୀବନର ସଞ୍ଜବତୀ ଲିଭି ଆସିଲା ବେଳେ, ସେ ନାଚରେ ଯୋଗ ଦେଇ, ଆତ୍ମହରା ହୋଇଉଠେ । ସେ ଭାବେ - ''ମୃତ୍ୟୁ ଆସିବ ଆସୁ ତା'ର ଭୟ ନାହିଁ । ମୃତ୍ୟୁପରେ ସେ ପୁଣି ଫେରି ଆସିବ - ଏହି ତା'ର ଆଦରର ପୃଥିବୀକୁ, ତା'ର ପ୍ରିୟ ଏହି ସୁନ୍ଦର, ସବୁଜ ଅରଣ୍ୟ ମଧ୍ୟକୁ । ସେ କାଳଜୟୀ ।''

ଏହି ହେଉଛି ଏକ - ଆଦିବାସୀ କନ୍ଧ ନୃତ୍ୟର ପ୍ରାଣସ୍ପର୍ଶୀ, ଆବେଗଭରା ଉଚ୍ଛ୍ୱାସ- ଯାହା ମଧ୍ୟରେ ଥାଏ ଏକ ଗଭୀର ଜୀବନ-ଚେତନା (Life-affirmation) ସବୁ ମୃତ୍ୟୁର ପାହାଡ଼ିଆ କଳାଛାଇକୁ ଜୟ କରି ଶିଖିଛି । ସୁନ୍ଦର ପୃଥିବୀରେ ଜୀବନ ହିଁ ଏକ ସୁନ୍ଦର ଲୀଳା-ତାକୁ ସେ ଗଭୀର ଆନ୍ତରିକତା ସହ ଅଭିନୟ କରିଯିବ - ପ୍ରାଣର ମମତା ଭରି । ତାକୁ ସେ ଉପଭୋଗ କରିଯିବ-ପ୍ରକୃତିର ଏକନିଷ୍ଠ ସାଧକ ଓ ଉପାସକ ହୋଇ ।

## ଆଦିବାସୀ ନୃତ୍ୟ ଓ ଲୋକନୃତ୍ୟ :

ସବୁ ଆଦିବାସୀ ନୃତ୍ୟ-ଲୋକନୃତ୍ୟ ହିସାବରେ ପ୍ରଚାରିତ ହୋଇପାରେ, କିନ୍ତୁ ସବୁ ଲୋକନୃତ୍ୟ-ଆଦିବାସୀ ନୃତ୍ୟ ଭାବେ ପରିଗଣିତ ହୁଏନା । ଆଦିବାସୀ ନୃତ୍ୟ ହେଉଛି କୌଣସି ଉତ୍ସବ ଆରମ୍ଭ ପୂର୍ବରୁ ଏକ 'ସ୍ୱତଃସ୍ଫୂର୍ତ୍ତ ଭାବ ଗମ୍ଭୀର ସମବେତ ନୃତ୍ୟ' (Primitive aboriginal dance is nothing but spontaneous emotional rythmic expression, preparatory to ritual or battle.) । ଅନ୍ୟ ପକ୍ଷରେ ଲୋକ-ନୃତ୍ୟ, ହରିଜନ ଓ ଆଦିବାସୀ ବ୍ୟତୀତ ଅନ୍ୟ ଜାତି ମଧ୍ୟରେ ପ୍ରଚଳିତ ଓ ସୀମାବଦ୍ଧ । ଏହି ନୃତ୍ୟ, କଳାକାରମାନଙ୍କର ବ୍ୟକ୍ତିଗତ ଆନନ୍ଦ ପାଇଁ ଉଦ୍ଦିଷ୍ଟ ।

ନୃତ୍ୟ ସମାଲୋଚକ Projesh Banerjeeଙ୍କ ମତରେ "Unlike classical dance, folk dance was made for the sheer Pleasure of the performance and not for the entertainment of the public". । ସମ୍ବଲପୁର ଜିଲ୍ଲାର-'ଡାଲଖାଇ ନୃତ୍ୟ', କଳାହାଣ୍ଡି ଜିଲ୍ଲାର 'ଘୁମୁରା ନୃତ୍ୟ', ସୁନ୍ଦରଗଡ଼ ଜିଲ୍ଲାର 'କିସାନ ନୃତ୍ୟ', ମୟୁରଭଞ୍ଜ ଜିଲ୍ଲାର 'ଛଉନୃତ୍ୟ' ଏବଂ ଓଡ଼ିଶାର ବିଭିନ୍ନ ଜିଲ୍ଲାର ଗ୍ରାମାଞ୍ଚଳରେ ପ୍ରଚଳିତ-'ଗୋଟିପୁଅ ନାଚ' ପ୍ରଭୃତି 'ଲୋକନୃତ୍ୟ' ରୂପେ ପରିଚିତ । ପୁରୀ ଜିଲ୍ଲାର ନରେନ୍ଦ୍ରପୁରର 'ଚଢ଼େଇଆ ନୃତ୍ୟ', ଗଞ୍ଜାମ ଓ କଟକର 'ଦଣ୍ଡନାଚ' ପ୍ରଭୃତି ଏହି ଲୋକନୃତ୍ୟର ଅନ୍ତର୍ଭୁକ୍ତ ।

## ଆଦିବାସୀ ନୃତ୍ୟର ସାମାଜିକ ମୂଲ୍ୟ :

୧୯୭୧ ଜନଗଣନା ଅନୁସାରେ ୨ କୋଟି ୧୯ ଲକ୍ଷ ୪୪ ହଜାର ୬୧୫ ଲୋକସଂଖ୍ୟା ମଧ୍ୟରୁ ଆଦିବାସୀଙ୍କ ସଂଖ୍ୟା ୫୦ ଲକ୍ଷ ୭୧ ହଜାର ୯୩ । ଏହି ଆଦିବାସୀଙ୍କ ସଂଖ୍ୟା ଓଡ଼ିଶାର ସମଗ୍ର ଲୋକସଂଖ୍ୟାର ଏକ ଚତୁର୍ଥାଂଶ । ଏହି ୫୦ ଲକ୍ଷ ଆଦିବାସୀ ମଧ୍ୟରେ ୬୨ଟି ଉପଜାତି ଅଛନ୍ତି, ଯେଉଁମାନଙ୍କ ମଧ୍ୟରୁ ଅନେକ ନିଜ ନିଜ ଆଦିବାସୀ ଭାଷାରେ କଥାବାର୍ତ୍ତା ହୁଅନ୍ତି । ଏହି ୫୦ ଲକ୍ଷ ମଧ୍ୟରୁ ପ୍ରାୟ ୩୦ ଲକ୍ଷ କନ୍ଧ, ସାନ୍ତାଳ, ସଉରା, ଗଦବା ମୁଣ୍ଡାରି ପ୍ରଭୃତି ନିଜ ନିଜର ଭାଷାରେ କଥା ହୁଅନ୍ତି । କେବଳ ୨୦ ଲକ୍ଷ ଆଦିବାସୀ ଓଡ଼ିଆ ଭାଷା କହନ୍ତି । ଆମେ ସମତଳ ଅଞ୍ଚଳର ଲୋକମାନେ ସେମାନଙ୍କର ଭାଷା ବୁଝୁନା-ବୁଝିବାକୁ ଚେଷ୍ଟା ମଧ୍ୟ କରୁନା । ଓଡ଼ିଆ ତା'ର ''ଜଗନ୍ନାଥ ସଂସ୍କୃତି'' ପାଇଁ ଗର୍ବ କରେ । ଏହି ଜଗନ୍ନାଥ ସଂସ୍କୃତି ଆଦିବାସୀ ଶବର ସଂସ୍କୃତି ଓ ଆର୍ଯ୍ୟ ସଂସ୍କୃତିର ସମନ୍ୱୟରେ ଗଢ଼ି ଉଠିଛି । 'ନୀଳମାଧବ'ର ପୂଜକ ଥିଲେ ରାଜା 'ବିଶ୍ୱାବସୁ' । ଦାସିଆ

ବାଉରୀରର ଭକ୍ତି ବିଷୟକ ଉପାଖ୍ୟାନ ସୂଚାଇ ଦିଏ – ଓଡ଼ିଆର ଜଗନ୍ନାଥ ସଂସ୍କୃତିରେ- ଉଚ୍ଚ-ନୀଚ, ଛୁଆଁ ଓ ଅଛୁଆଁ ନୀତି ନାହିଁ । ତେଣୁ ଯେଉଁ ସମନ୍ୱୟ ଓ ସାମ୍ୟଭାବ ନେଇ ଆମ ଜଗନ୍ନାଥ ସଂସ୍କୃତି ଗଢ଼ିଉଠିଛି – ସେହି ଉଦାର ଭାବନାରେ ଉଦ୍‌ବୁଦ୍ଧ ହୋଇ, ଅନୁନ୍ନତ ଆଦିବାସୀ ଜୀବନର ବିଭିନ୍ନ ବିଭାଗ ଅନୁଧ୍ୟାନ କରି ସେମାନଙ୍କର ସାମଗ୍ରିକ ଉନ୍ନତି ପାଇଁ ଆମେ ଚେଷ୍ଟା କରିବା ଉଚିତ୍ । ଏହାଦ୍ୱାରା 'ସାମାଜିକ ସଂହତି' (Social Integration) ପ୍ରତିଷ୍ଠିତ ହୋଇପାରିବ ।

ଆଦିବାସୀମାନଙ୍କର ନୃତ୍ୟ, ସଙ୍ଗୀତ ଓ ସାମାଜିକ ଚାଲିଚଳନକୁ ଆମର ଜାଣିବା ଉଚିତ୍ । ସେହି ଆଦିବାସୀ ନୃତ୍ୟର ଜୀବନଧର୍ମୀ ମାଦକତା ଓ ସଙ୍ଗୀତର ଆବେଗପୂର୍ଣ୍ଣ ମୂର୍ଚ୍ଛନା ସର୍ବୋପରି ସେମାନଙ୍କର ସରଳତା ଯେ କେତେ ପ୍ରାଣସ୍ପର୍ଶୀ ତାହା ଆମକୁ ହୃଦୟଙ୍ଗମ କରିବାକୁ ହେବ । ଆଦିବାସୀ ନୃତ୍ୟ ଓ ସଙ୍ଗୀତ ମଧ୍ୟରେ ଆମେ ପାଇପାରିବା ସମଗ୍ର ଆଦିବାସୀ ଜୀବନର ଧର୍ମ-ବିଶ୍ୱାସ ଓ ସାମାଜିକ ଉଦାରତାର ଏକ ଚିତ୍ର । ଖଟିଖିଆ, ସରଳ ବିଶ୍ୱାସୀ, ଭୂମିହୀନ ଆଦିବାସୀମାନେ ବଣଜଙ୍ଗଲରେ ପୋଡୁଚାଷ, ଶିକାର ଓ ଜଙ୍ଗଲଜାତ ଦ୍ରବ୍ୟ ଉପରେ ନିର୍ଭର କରି ଚଳନ୍ତି । ଅରଣ୍ୟର ପାହାଡ଼ ଓ ବୃକ୍ଷଲତାଗୁଡ଼ିକୁ ଦେବଦେବୀ ରୂପେ ପୂଜା କରନ୍ତି । ଦେବଦେବୀ ମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ନାନା ପ୍ରକାର ପୂଜା, ବଳି, ସମବେତ ନୃତ୍ୟ ଓ ସଙ୍ଗୀତ ଉତ୍ସବର ଆୟୋଜନ କରନ୍ତି । ସରଳ ବିଶ୍ୱାସୀ ସେମାନେ । ସେମାନଙ୍କୁ ଆଶା ଦେଖାଇ, ପୁଣି ଅନେକେ ଭଣ୍ଡାଇ ସେମାନଙ୍କୁ ଠକି ଦିଅନ୍ତି । ଏହି ପ୍ରକାର ନୈରାଶ୍ୟମୟ ଜୀବନ ମଧ୍ୟରେ ନୃତ୍ୟ ସେମାନଙ୍କର ସମବେତ ଆନନ୍ଦର ଏକମାତ୍ର ମାଧ୍ୟମ ।

ଆଦିବାସୀଟିଏ ଅନୁଭବ କରେ ଯେ, ତା' ଜୀବନରେ ଏହି ସମବେତ ନୃତ୍ୟର ଆବଶ୍ୟକତା ଯଥେଷ୍ଟ ରହିଛି । ସାମାଜିକ ନିରାପତ୍ତା, ଆନନ୍ଦ ଓ ଜୀବନ ସଂଗ୍ରାମ ପାଇଁ ପ୍ରେରଣା ସେ ପାଇ ପାରିବ ସେଇ ନୃତ୍ୟ ମଧ୍ୟରେ । ତେଣୁ ସେ ମଦ ଖାଏ, ରାତିସାରା ନାଚେ-ସାଙ୍ଗସାଥିମାନଙ୍କ ସହିତ । ରାତିସାରା ନାଚି ମଧ୍ୟ ସେ ଥକି ଯାଏନି । ତହି ପରଦିନ ନୂତନ ଉଦ୍ୟମରେ କାମ କରେ । ନୃତ୍ୟଭରା ଆଦିବାସୀର ସରଳ ଜୀବନର ବିଭିନ୍ନ ନୃତ୍ୟ ଉତ୍ସବ ମଧ୍ୟରେ ଯେଉଁ 'ଏକ ଆରଣ୍ୟକ ଆଦିମ ସୌନ୍ଦର୍ଯ୍ୟବୋଧ' ନିହିତ ଅଛି, ଯାହା ପ୍ରତ୍ୟେକ ଦର୍ଶକର ହୃଦୟକୁ ମୋହିତ କରେ, ସେ ଆନନ୍ଦକୁ ଭାଷାରେ ମଧ୍ୟ ବ୍ୟକ୍ତ କରିପାରେନା । କୋକିଳର କୁହୁତାନର ଭାଷା ନବୁଝି ମଧ୍ୟ ଆମେ ଯେପରି ସେ ସ୍ୱରର ମାଧୁର୍ଯ୍ୟରେ ମୁଗ୍ଧ ହେଉ, ଆଦିବାସୀର ନୃତ୍ୟର ଭାଷା ନବୁଝିପାରି ମଧ୍ୟ ଦର୍ଶକ ସେ ସମବେତ ନୃତ୍ୟରେ ଆନନ୍ଦ ପାଏ, ସେ ଆନନ୍ଦ ବାସ୍ତବିକ ଅବ୍ୟକ୍ତ ଓ ଅନିର୍ବଚନୀୟ । ସେ ଆନନ୍ଦକୁ 'ନୈସର୍ଗିକ ଆନନ୍ଦ' କହିଲେ ଅତ୍ୟୁକ୍ତ ହେବ ନାହିଁ ।

## ଆଦିବାସୀ ନୃତ୍ୟର ବୈଚିତ୍ର୍ୟ :

ଆଦିବାସୀ ନୃତ୍ୟ ବୈଚିତ୍ର୍ୟମୟ । ବିଭିନ୍ନ ଜିଲ୍ଲାରେ ବିଭିନ୍ନ ପ୍ରକାରର ଆଦିବାସୀ ନୃତ୍ୟ ଏବେ ମଧ୍ୟ ଆଦିବାସୀ ଜୀବନକୁ ଆନନ୍ଦମୁଖର କରୁଛି । ସେଗୁଡ଼ିକ ମଧ୍ୟରେ ମୟୂରଭଞ୍ଜ ସାନ୍ତାଳ ନୃତ୍ୟ, କୋରାପୁଟ ଜିଲ୍ଲାର କନ୍ଧ, କୋୟା, ପରଜା ଗଦବା ନୃତ୍ୟ, ସୁନ୍ଦରଗଡ଼ ଜିଲ୍ଲାର ତରାନ୍, କିଷାନ୍ ଛାଙ୍ଗୁ, ଝୁମର, ବାନ୍ଧିବୋତଲ ଏବଂ ସମ୍ବଲପୁରର 'କୋଶିଆବାଡ଼ି' ନୃତ୍ୟଗୁଡ଼ିକ ଆଦିବାସୀ ଜୀବନର ୧୨ ମାସର ୧୩ ନୃତ୍ୟ ଉତ୍ସବ ସେମାନଙ୍କ ଜୀବନକୁ ଆନନ୍ଦରେ ମୁଖରିତ କରେ । ଏହି କ୍ଷୁଦ୍ର ପ୍ରବନ୍ଧରେ କେବଳ ମାତ୍ର କେତୋଟି ମୁଖ୍ୟ ଆଦିବାସୀ ନୃତ୍ୟର ବୈଚିତ୍ର୍ୟ ସଂକ୍ଷେପରେ ବର୍ଣ୍ଣନା କରାଯାଉଛି ।

## ପରଜା ନୃତ୍ୟ :

ଧର୍ମବିଶ୍ୱାସକୁ ଚରିତାର୍ଥ କରିବାପାଇଁ ଏବଂ 'ସାମୂହିକ ଆନନ୍ଦ' ପାଇଁ ପରଜାମାନେ ବିଭିନ୍ନ ସାମାଜିକ ଉତ୍ସବରେ, ମାଦକତା ଭରା ନୃତ୍ୟ ପ୍ରଦର୍ଶନ କରନ୍ତି । ସେମାନେ ଭୂମିଦେବୀ (The Goddess of Earth)କୁ ପୂଜା କରନ୍ତି । ଏହାକୁ ସେମାନେ ଯାକର ଦେବତା (Jakar Debata) ବୋଲି କହନ୍ତି । ଯେଉଁ ଗୀତ ଗୁଡ଼ିକ ଗାଆନ୍ତି, ସେମାନଙ୍କ ମଧ୍ୟରେ ନନ୍ଦୀ ଗୀତା (Nandi Geeta) ଓ ଲରୀଗୀତା(Lari Geeta) ମୁଖ୍ୟ । ଚୈତ୍ର ମାସରେ ଆଠଦିନ ଧରି ପରଜାମାନେ 'ଚୈତ୍ରପର୍ବ' ପାଳନ କରନ୍ତି । ସେଇ ପର୍ବ ଦିନଗୁଡ଼ିକରେ ସକାଳେ ପାଚିଲା ଆମ୍ବ ଖାଇ, ବଣକୁ ଶିକାର ପାଇଁ ପରଜା ଯୁବକମାନେ ବାହାରି ଯା'ନ୍ତି । ଯଜ୍ଞ ହେଲେ ସମବେତ ନୃତ୍ୟ ଆରମ୍ଭ ହୁଏ । ରାତିସାରା ନାଚ ଚାଲେ । ଖିଆପିଆ ନାଚଗୀତର ଧୁମ୍‌ଧାମ୍‌ରେ ମହାଆନନ୍ଦରେ ଏହି ଚୈତ୍ରପର୍ବର ସମବେତ ଉତ୍ସବ କଟିଯାଏ ।

ଏହି ଉତ୍ସବରେ ପରଜାନୃତ୍ୟ ପାଇଁ ପରଜା ଝିଅମାନେ ରଙ୍ଗୀନ ହାତବୁଣା ଶାଢ଼ୀ ପିନ୍ଧନ୍ତି । ଜୁଡ଼ାରେ ଫୁଲ ଭରି ଦିଅନ୍ତି । ଏହି ଶାଢ଼ୀ କେବଳ ଆଣ୍ଠୁଯାଏ ପିନ୍ଧାହୁଏ । ସେମାନେ ଶାଢ଼ୀର ପଣତଟିକୁ ଅଣ୍ଟାରେ ଗୁଡ଼ାଇ ପିନ୍ଧିବାକୁ ଭଲ ପାଆନ୍ତି । ରୂପା ଓ ପିତ୍ତଳର ଗହଣା ପିନ୍ଧି ନାଚରେ ଯୋଗ ଦିଅନ୍ତି – କେବଳ ଅବିବାହିତ ଯୁବକ ଓ ଯୁବତୀମାନେ । ଯୁବକମାନେ ହାତରେ ଧରନ୍ତି ସେମାନଙ୍କର ପ୍ରିୟ "ଡୁଡୁଙ୍ଗା"ବାଦ୍ୟଯନ୍ତ୍ର(A country made string instrument) । ଧାଙ୍ଗଡ଼ୀମାନେ ଦେହକୁ ବେଶ୍ ସୁନ୍ଦର ଭାବରେ ସଜାନ୍ତି । ହାତରେ ମୟୂରପର ଧରି ମନମତାଣିଆ ସ୍ୱରରେ ପୁଅମାନଙ୍କ ଆଡ଼କୁ ମୁହଁ କରି ନାଚନ୍ତି । ଏହି ନୃତ୍ୟକୁ 'ଧାଙ୍ଗଡ଼ୀ ନୃତ୍ୟ' (Dhangdi dance) କୁହାଯାଏ । ପ୍ରଥମେ ବାମପାଦ ଦି'ଥର ଆଗକୁ ପକାଇ,

ତା'ପରେ ଡାହାଣ ପାଦକୁ ଆଗକୁ ପକାଇ, ତାଳ ସହିତ ସମନ୍ୱୟ ରଖି ଆଗକୁ ପଛକୁ ହୋଇ ସୁନ୍ଦର ଭାବରେ ନାଚନ୍ତି ଓ ଗାଆନ୍ତି ଅତ ମଧୁର ସ୍ୱରରେ । ତାଙ୍କ ଭାଷାରେ ସେମାନେ ଗାଆନ୍ତି –

**ଗଙ୍କୁରି କୁଆରୁମା, ବାଟୁକୁଆରୁ**
**କଣାଙ୍ଗିକା, ଛିଡ଼ିଗଲି, ମାଣ୍ଡିଆ ସୁଆରୁ... ।**

ଅର୍ଥ – ''ମୁଁ ଗ୍ରାମ-ଦେବତାର ପୂଜା କରେ– ମୁଁ ଏଇ ଗୀତ ଗାଉଛି । ମୁଁ କେବେହେଲେ ଜୀବନରେ ଏହି ଗୀତ ଓ ନାଚକୁ ଭୁଲି ପାରିବି ନାହିଁ ।'' 'ପରଜା' ଅଭିଆଡ଼ୀ ଝିଅମାନଙ୍କର ଏହି ନୃତ୍ୟରେ କଣ୍ଠସ୍ୱର ମଧ ଖୁବ୍ ମଧୁର ଏବଂ ଏମାନଙ୍କର ନୃତ୍ୟ ମଧ ମନୋମୁଗ୍ଧକର ।

**କନ୍ଧ ନୃତ୍ୟ :**

ଓଡ଼ିଶାର କୋରାପୁଟ ଜିଲ୍ଲାର ଗୁଣୁପୁର, ବିଷମକଟକ, ମାଲ୍‌କାନ୍‌ଗିରି ଅଞ୍ଚଳରେ କନ୍ଧମାନେ ବହୁ ସଂଖ୍ୟାରେ ବସବାସ କରି ରହନ୍ତି । ଫୁଲବାଣୀ, କଳାହାଣ୍ଡି, ବଲାଙ୍ଗୀର ଓ ଗଞ୍ଜାମ ଜିଲ୍ଲାରେ ମଧ ଏମାନଙ୍କର ବସତି ଦେଖିବାକୁ ମିଳେ । କନ୍ଧମାନେ ଖୁବ୍ ପରିଶ୍ରମୀ ଓ ପ୍ରକୃତିର ଉପାସକ । କେତେକ ବୃକ୍ଷ ଏମାନଙ୍କର ଆରାଧ ଦେବତା । ଦେବୀକୁ ସନ୍ତୁଷ୍ଟ କରି ଭଲ ଫସଲ ଅମଳ ପାଇଁ –'ମେରିଆ ବଳିପ୍ରଥା' ପ୍ରଚଳନ ଥିଲା ଏହି କନ୍ଧ ସମାଜ ମଧରେ । ଆଇନ୍ ଦ୍ୱାରା ଏହି ପ୍ରଥାକୁ ନିଷିଦ୍ଧ କରାଯାଇଛି । କନ୍ଧ ମଧରେ ପୁଣି ଅନେକ ଉପଜାତି ଅଛନ୍ତି ଯଥା–ଡଙ୍ଗରିଆ, ମାଲୁଅ ଏବଂ ସୁଦ୍ଧ କନ୍ଧ(Sudha Kandha) କନ୍ଧ ଝିଅମାନେ 'ଦିପେଡ଼ି' (Dipedi) (ଖଣ୍ଡିଏ ସରୁ ବସ୍ତ୍ରାଂଶ) ଦ୍ୱାରା ଅଣ୍ଟାକୁ ଘୋଡ଼ାଇ ଆଣ୍ଠୁଯାଏ ପିନ୍ଧିଥା'ନ୍ତି । ଛାତିରୁ ଗଳାଯାଏ ଦେହକୁ ଆଉ ଖଣ୍ଡିଏ ବସ୍ତ୍ରାଂଶ ଦ୍ୱାରା ଆବୃତ କରନ୍ତି । ଏହି ବସ୍ତ୍ରାଂଶକୁ ତଉଲ(Taul) କହନ୍ତି । ଉଲଖିଭରା ହାତ ଓ ମୁହଁ । ଓଠରେ ହସଭରି ବଣର ଫୁଟନ୍ତା ଫୁଲପରି ବୁଣି ହୋଇଯାନ୍ତି – ଧାଙ୍ଗଡ଼ୀମାନେ ମାଘ ପର୍ବର ନାଚ ଉତ୍ସବରେ । ଗୋଟିଏ ଗାଁର ପୁଅମାନେ ଅନ୍ୟ ଏକ କନ୍ଧ ଗାଁର ଅବିବାହିତା ଝିଅମାନଙ୍କ ସହିତ ନାଚନ୍ତି । ରାତିସାରା ନାଚି ସାରିଲା ପରେ ପୁଅମାନେ ଓ ଝିଅମାନେ 'ଧାଙ୍ଗଡ଼ାବସା'ରେ(Dhangada Basa) ରାତି କଟାନ୍ତି ଓ ଧାଙ୍ଗଡ଼ାମାନେ ଧାଙ୍ଗଡ଼ୀମାନଙ୍କ ମଧରୁ ଜୀବନସଙ୍ଗିନୀ ବାଛିବାର ସୁଯୋଗ ପାଆନ୍ତି । ପ୍ରେମ, ଦେବଦେବୀ ଉପାସନା, ପ୍ରକୃତିର ରୂପ ବର୍ଣ୍ଣନା କନ୍ଧନୃତ୍ୟ–ସଙ୍ଗୀତର ବିଷୟବସ୍ତୁ । ଏଇ ଗୀତ ଗୁଡ଼ିକର ସ୍ୱର ଖୁବ୍ ମଧୁର ଓ ଶ୍ରୁତି ସୁଖକର । ଗଭୀର ନିଶାର୍ଦ୍ଧରେ ଏହି ନୃତ୍ୟର ଝଙ୍କାର ମନରେ ସୃଷ୍ଟି କରେ ଏକ ମୋହନ ମନ୍ତ୍ରମୁଗ୍ଧ ମମତା ଏଇ ଜୀବନ

ପ୍ରତି, ଏଇ ସୁନ୍ଦର ପୃଥିବୀ ପ୍ରତି । କନ୍ଧମାନଙ୍କର ସାମାଜିକ ଜୀବନ ଓ ଭାଷା ଉପରେ ବିଦେଶୀ ଭାଷାତତ୍ତ୍ୱବିଦ୍ G.A. Grierson ଓ ଗବେଷକ ଭେରିୟାର୍ ଏଲ୍‌ଉଇନ୍(Elwin) ଗବେଷଣାମୂଳକ ପୁସ୍ତକ ଲେଖିଛନ୍ତି ।

**ଗଦବା ନୃତ୍ୟ :**

ଓଡ଼ିଶାର କୋରାପୁଟ ଜିଲ୍ଲାର ନନ୍ଦପୁର ତଥା ଲମତାପୁଟ ଅଞ୍ଚଳରେ ଗଦବା ସଂପ୍ରଦାୟର ଆଦିବାସୀମାନେ ବହୁ ସଂଖ୍ୟାରେ ବସବାସ କରି ରହନ୍ତି । ଏମାନଙ୍କର ଗୋଲାକାର ଘର, ପିନ୍ଧୁଥିବା ଶାଢ଼ୀ ଏବଂ ନୃତ୍ୟ ପରିବେଷଣରୁ ସୌନ୍ଦର୍ଯ୍ୟଜ୍ଞାନର ପରିଚୟ ମିଳିଥାଏ । ଏହି ସଂପ୍ରଦାୟରେ ଚଳୁଥିବା ନୃତ୍ୟକୁ 'ଢେମ୍‌ସା' ନୃତ୍ୟ କୁହାଯାଏ । ଏହା ସେମାନଙ୍କର ଏକ ପ୍ରସିଦ୍ଧ ନୃତ୍ୟ । ଝିଅମାନେ ଦଳଦଳହୋଇ ହାତ ଧରାଧରି ହୋଇ ଏହି ନୃତ୍ୟ କରିଥାନ୍ତି । ସାମାଜିକ ଉତ୍ସବ, ପୁଷପୂର୍ଣ୍ଣିମା ଏବଂ ଚୈତ୍ରପର୍ବରେ ଗଦବା ଧାଙ୍ଗଡ଼ୀମାନେ ଗୀତର ତାଳେତାଳେ ନୃତ୍ୟ କରି ମତୁଆଲା ହୋଇଥାନ୍ତି । ଏହି ଗୀତର ସ୍ୱର ଅତି ମଧୁର । ତାଙ୍କ ଭାଷାରେ ସେମାନେ ଗାଆନ୍ତି :

ଡନନେବୁଲବ୍ ଇଆନାଇ ଦୁଲି ସୁନ୍ଦରୀନେଦ୍
ଡନେବ୍ ବାପା ଇଆନାଇ ମାଟି ସୁନ୍ଦର ନେନ
କେତେକ ଗୁନେଇ ଇଲଦୁଲ ସୁନ୍ଦେରୀ ନଡ଼
କେତେକ ଗୁନେଇ ଇଲମାଟି ସୁନ୍ଦେରୀ ବଡ଼
କେତେଦୂର ଭଜିସୁ ଭଜିନେଇ ଡିଡ଼କ ପେନ
କେତେଦୂର ଭଜିସୁ ଡାଲଗୁ ନେଇ ଡିଡ଼ିକ ପେନ
ପେନସିନା ଦୁଲନରେ ଦାରୁଜାଡ଼ ଭଜିଦୁଗୁ
ପେନସିନା ବୁଲନରେ ପତରଜାଡ଼େ ଇଲଡ଼
ତେବେସୁ ସିନା ମେନା ବହନି ଚିନାରି ନମପଡ଼େଇସୁ
ତେବେ ସିନା ଦୁନା ବହନି ଲାଗା ପାଡ଼େଇଣୁ
ଲେନାବଇନି ଶୁନଡିଏ ମନେ କପୁଆର ଡେମ
ଶୀତଳା ଛାଇ ସୁନଡ଼ିଏ ମନେ ରାଗଆର ଡେମ୍ ।

**କୋୟା ନୃତ୍ୟ :**

ଓଡ଼ିଶାର କୋରାପୁଟ ଜିଲ୍ଲାର ମାଲ୍‌କାନଗିରି ଅଞ୍ଚଳରେ କୋୟା ସମ୍ପ୍ରଦାୟର ଆଦିବାସୀମାନେ ବସବାସ କରନ୍ତି । କୋୟା ନୃତ୍ୟ ଅତି ଆକର୍ଷଣୀୟ । ପୁରୁଷମାନେ

ମୁକୁଟ ଓ ସ୍ତ୍ରୀମାନେ ମୁଣ୍ଡରେ ରଙ୍ଗୀନ ପଟି ବାନ୍ଧି ଏହି ନୃତ୍ୟ ପରିବେଷଣ କରିଥାନ୍ତି । ସାଧାରଣତଃ ଚୈତ୍ରପର୍ବରେ ବାଦ୍ୟର ତାଳେତାଳେ କୋୟା ପୁରୁଷ ସ୍ତ୍ରୀ ଏହି ନୃତ୍ୟ କରିଥାନ୍ତି ।

**କୋୟା ନୃତ୍ୟର ଗୀତ :**

**କୋଲାକନା କେଲାଦାଦା ଜୈଇ ଜୈଇ ରାମ**
**ଜୈଇ ଜୈଇ ସୀତାରାମ ।**
**ନିମାଇଗା ନିମାଦାଦା ଜୈଇ ଜୈଇ ରାମ**
**ଜୈଇ ଜୈଇ ସୀତାରାମ ।**
**ଏରେ ଗୁଡ଼ ଦାଦାତା ଦାଦା ଜୈଇ ନେଇ ରାମ**
**ଜୈଇ ନେଇ ସୀତାରାମ ।**
**ଦେବେ ସଂଗାଲ, ଦାତାନନ ଜୈଇ ଜୈଇ ରାମ**
**ଜୈଇ ଜୈଇ ସୀତାରାମ ।**

ଓଡ଼ିଶାର ପ୍ରଖ୍ୟାତ ଔପନ୍ୟାସିକ ଗୋପୀନାଥ ମହାନ୍ତି, ଆଦିବାସୀ କନ୍ଧ ଜୀବନ ଉପରେ 'ଅମୃତର ସନ୍ତାନ' ନାମକ ଏଇ ଉପନ୍ୟାସ ଲେଖିଛନ୍ତି । ବିଶିଷ୍ଟ କବି ଓ ପ୍ରାବନ୍ଧିକ ସୀତାକାନ୍ତ ମହାପାତ୍ର କନ୍ଧ ଓ ପରଜା ସଙ୍ଗୀତକୁ ଇଂରାଜୀରେ ଅନୁବାଦ କରି ବିଶ୍ୱସାହିତ୍ୟ ଭଣ୍ଡାରକୁ ସମୃଦ୍ଧିଶାଳୀ କରିଛନ୍ତି । ଶ୍ରୀ ମହାପାତ୍ରଙ୍କ ସଙ୍କଳନଟିର ନାମ ହେଉଛି (Staying is now here, An Anthology of Kandha and Paraja Poetry) ଚିକାଗୋ ବିଶ୍ୱବିଦ୍ୟାଳୟର ବିଶିଷ୍ଟ ଭାଷାତତ୍ତ୍ୱବିଦ୍ (Norman H. zide) ଓଡ଼ିଶାର ଆଦିବାସୀ କନ୍ଧ ଓ ପରଜା ସଙ୍ଗୀତରେ ମୁଗ୍ଧ ହୋଇ ଏହି ସଂକଳନଟିର ଭୂୟସୀ ପ୍ରଶଂସା କରିଛନ୍ତି ।

ଓଡ଼ିଶା ଆଦିବାସୀ ନୃତ୍ୟ ସଙ୍ଗୀତର କଳାତ୍ମକ ବୈଶିଷ୍ଟ୍ୟକୁ ଅନୁଧ୍ୟାନ କରି ସେଗୁଡ଼ିକୁ ବିଭିନ୍ନ ପ୍ରାନ୍ତୀୟ ଭାଷାରେ ଅନୁବାଦ କଲେ ଓଡ଼ିଶାର ଆଦିବାସୀ ସଂସ୍କୃତିର ମହତ୍ତ୍ୱକୁ ସମସ୍ତେ ଉପଲବ୍ଧି କରିପାରନ୍ତେ । ଆଶା ଓ ବିଶ୍ୱାସ, କବି, ସାହିତ୍ୟିକ ଓ ସଙ୍ଗୀତଜ୍ଞମାନେ ଏ ଦିଗରେ ଅଧିକ ଗବେଷଣା କରି ଆଦିବାସୀ ନୃତ୍ୟ ସଙ୍ଗୀତର ବିକାଶରେ ଅଗ୍ରଣୀ ହେବେ ।



# ବୈଦିକ ସଂସ୍କୃତିରେ ସଂହତି ଓ ଐକ୍ୟର କଳ୍ପନା

ପ୍ରାଗୈତିହାସିକ ଯୁଗରୁ ମଣିଷ ଚେଷ୍ଟା କରିଆସିଛି ଯେ, ସେ କିପରି ତା'ର ପରିବେଶ ମଧ୍ୟରେ ସୁଖରେ, ଶାନ୍ତିରେ ଓ ସୌହାର୍ଦ୍ଦପୂର୍ଣ୍ଣ ବାତାବରଣ ମଧ୍ୟରେ ଚଳିପାରିବ । ମଣିଷ ମନର ଏହି ଆଦିମ ସାମାଜିକ ଚେତନା ଫଳରେ ପ୍ରଥମେ ଗୋଷ୍ଠୀଜୀବନର ସୂତ୍ରପାତ ହୋଇଥିଲା ଏବଂ ଆଜି ତା'ର ନିଦର୍ଶନ ହେଉଛି ଆମେ ଓ ଆମ ସମାଜ । ବ୍ୟକ୍ତିଗତ ଓ ସାମୂହିକ ନିରାପତ୍ତା ରକ୍ଷା ଏବଂ ଜୀବନଯାପନରେ ସାମାଜିକ ବନ୍ଧନ ଦୃଢ଼ତର ହେଲା ଓ ଏହି ବନ୍ଧନ ହିଁ ପରିବାର ଓ ଗ୍ରାମ୍ୟ ଜୀବନର ବିକାଶରେ ସହାୟକ ହୋଇଥିଲା । ଏହି ଐକ୍ୟବୋଧରୁ ହିଁ ଜନପଦର ସୃଷ୍ଟି ଓ ବିକାଶ । କେତୋଟି ପରିବାରକୁ ନେଇ ଗ୍ରାମ ଗଠିତ ହୋଇଥାଏ । ଏହି ଗ୍ରାମକୁ ହିଁ ବୈଦିକ ଯୁଗର 'ଜନପଦ' କୁହାଯାଉଥିଲା । ଏହି ଜନପଦରେ ବିଭିନ୍ନ ଜାତିର ଲୋକ ବସବାସ କରୁଥିଲେ । ଧନୀ, ଦରିଦ୍ର, ସନ୍ୟାସୀ ଓ ଭିକ୍ଷୁକ ସମସ୍ତେ ଏହି ଜନପଦରେ ଜୀବନଯାପନ କରୁଥିଲେ । ସେତେବେଳେ ମଧ୍ୟ ସାମାଜିକ ଜୀବନ ମଧ୍ୟରେ ଅର୍ଥନୈତିକ ସାମାଜିକ ବୈଷମ୍ୟ ଥିଲା । ତଥାପି ସେମାନେ ହୃଦୟଙ୍ଗମ କରିଥିଲେ ଯେ, ସଂହତିରେ ହିଁ ଜୀବନର ନିରାପତ୍ତା ଓ କର୍ମ ହିଁ ମଣିଷର ପ୍ରଧାନ ଉଦ୍ଦେଶ୍ୟ । କର୍ମର ମର୍ଯ୍ୟାଦା ସମାଜରେ ଅଧିକ ଗୁରୁତ୍ୱ ପାଉଥିଲା । ଗୋତ୍ର ଓ ବଂଶ ଅନୁସାରେ ମଣିଷ ମଧ୍ୟରେ ଭେଦଭାବ ନଥିଲା ଏବଂ ଧନୀ ଓ ଦରିଦ୍ର ମଧ୍ୟରେ ବୈଷମ୍ୟବୋଧ ଆଦି ସାମାଜିକ ଅଶାନ୍ତିର ମୂଳ କାରଣମାନ ନ ଥିଲା । ବୈଦିକ ମଣିଷ ତ୍ୟାଗ ଓ ମୈତ୍ରୀ ବାଣୀରେ ଉଦ୍‌ବୁଦ୍ଧ ହେଉଥିଲା । ସକାଳେ ଓ ସନ୍ଧ୍ୟାରେ ସେ ସମାଜର ସାମୂହିକ ମଙ୍ଗଳ ଓ ନିରାପତ୍ତା ପାଇଁ ପ୍ରାର୍ଥନା କରୁଥିଲା ।

କ୍ଷୁଦ୍ରକ୍ଷୁଦ୍ର ଜନପଦର ସଂହତି ଓ ଐକ୍ୟ ଚେତନାରୁ କ୍ରମେ କ୍ରମେ ବିଶାଳ ଭାରତଭୂମିର ଐକ୍ୟ ଚିନ୍ତା ଭାରତର ମୁନିଋଷିମାନେ ବିଭିନ୍ନ ପୌରାଣିକ ସାହିତ୍ୟରେ ଲିପିବଦ୍ଧ କରିଯାଇଛନ୍ତି । ଏହାର ଏକ ନିଦର୍ଶନ ଆମେ ''ବିଷ୍ଣୁ ପୁରାଣ''ରେ ଦେଖିବାକୁ ପାଉ । ଏଥିରେ ପରାଶର ମୈତ୍ରେୟଙ୍କୁ କହିଛନ୍ତି –

**''ଉତ୍ତରଂ ଯତ୍ ସମୁଦ୍ରସ୍ୟ ହିମାଦ୍ରେଶ୍ଚୈବ ଦକ୍ଷିଣମ୍**
**ବର୍ଷଂ ତଦ୍‌ଭାରତମ୍ ନାମ ଭାରତୀ ଯାତ୍ର ସନ୍ତତିଃ ।**

(ବିଷ୍ଣୁ ପୁରାଣ, ୩ୟ ଅଧ୍ୟାୟ, ପ୍ରଥମ ଶ୍ଳୋକ)

ଅର୍ଥାତ୍ - ହେ ମୈତ୍ରେୟ, ଯାହାର ଦକ୍ଷିଣରେ ମହୋଦଧି ସାଗର, ଉତ୍ତରରେ ବରଫାବୃତ ହିମାଳୟ ଅବସ୍ଥିତ, ତାହା ଭାରତ ନାମରେ ପରିଚିତ । ସେହି ଦେଶର ଭାରତ ରାଜାର ବଂଶଧରମାନେ ଏକତ୍ର ରହି ବସବାସ କରନ୍ତୁ ।

ଭାରତରେ ଧର୍ମପ୍ରାଣ ବ୍ୟକ୍ତିମାନେ ପ୍ରାତଃସ୍ନାନ କରି ସୂର୍ଯ୍ୟଙ୍କୁ ଜଳତର୍ପଣ କଲାବେଳେ ସୁଲଳିତ ସ୍ୱରରେ ନିମ୍ନଲିଖିତ ମନ୍ତ୍ର ଉଚ୍ଚାରଣ କରନ୍ତି, ଯାହା ଭାରତର ଅଗଣିତ ନାଗରିକ ମନରେ ଏକ ଅଭିନ୍ନ ସଂହତିର ମନୋଭାବ ଉଦ୍ରେକ କରେ -

**''ଗଙ୍ଗେ ଚ ଯମୁନେ ଚୈବ**
**ଗୋଦାବରୀ ସରସ୍ୱତୀ**
**ନର୍ମଦେ ସିନ୍ଧୁକାବେରୀ**
**ଜଳେସ୍ମିନ୍ ସାନିଧଂ କୁରୁ ।''**

''ଅର୍ଥାତ୍ ହେ ଗଙ୍ଗା, ଯମୁନା, ସରସ୍ୱତୀ, ଗୋଦାବରୀ, ନର୍ମଦା, ସିନ୍ଧୁ, କାବେରୀ, ତୁମ୍ଭେମାନେ ଆସ ମୋର ଏହି ଜଳତର୍ପଣରେ ପ୍ରବେଶ କର ।'' ସର୍ବଶକ୍ତିମାନ ସାର୍ବଭୌମ ଶାସକ କର୍ତ୍ତୃତ୍ୱରେ ବିଶାଳ ସାମ୍ରାଜ୍ୟକୁ ସୁସଂହତି ଓ ଐକ୍ୟବଦ୍ଧ କରି ରଖିବାର କଳ୍ପନା ଆମ ବୈଦିକ ସଂସ୍କୃତିର ଏକ ବୈଶିଷ୍ଟ୍ୟ ଥିଲା । ସେହି ସର୍ବଶକ୍ତିମାନ୍ ଶାସକ ବିଶ୍ୱମହାପୁରୁଷ ହୋଇପାରନ୍ତି କିମ୍ବା ଜାଗତିକ କ୍ଷେତ୍ରରେ ଜଣେ ସମ୍ରାଟ ମଧ୍ୟ ହୋଇପାରନ୍ତି । ସମାଜର ସମସ୍ତ ପ୍ରାଣୀ ସଂହତି ଓ ଐକ୍ୟ ମନୋଭାବ ଦ୍ୱାରା ଆକୃଷ୍ଟ ହୋଇ ପ୍ରେମମୟ ଜୀବନଯାପନ କରନ୍ତୁ, ଏହା ହିଁ ଥିଲା ଆମର ବୈଦିକ ସଂସ୍କୃତିର ଆଦର୍ଶ । ବୈଦିକ ସଂସ୍କୃତିର ମୂଳକଥା ହେଲା-ସତ୍ୟ ଏବଂ ସେହି ସତ୍ୟ ହିଁ ତ୍ୟାଗ ଓ ମୈତ୍ରୀ । ଏହି ତ୍ୟାଗ ଓ ମୈତ୍ରୀ ବନ୍ଧନରେ ଆବଦ୍ଧ ହୋଇ ସେହି ବିଶ୍ୱ-ମହାପୁରୁଷଙ୍କର କରୁଣାରେ ସମସ୍ତେ ଶାନ୍ତିମୟ ଜୀବନଯାପନ କରନ୍ତୁ, ଏହା ହିଁ ଥିଲା ଆମର ବୈଦିକ କଳ୍ପନା । ଋଗ୍‌ବେଦର ଦଶମ ମଣ୍ଡଳରେ ଥିଲା ପୁରୁଷସୂକ୍ତର ଅନ୍ତର୍ନିହିତ ଭାବରୁ ହିଁ ଉପରୋକ୍ତ କଳ୍ପନାର ମୂଳସୂତ୍ର ଜଣାପଡ଼େ ।

**''ସହସ୍ରଶୀର୍ଷା, ପୁରୁଷଃ, ସହସ୍ରାକ୍ଷଃ, ସହସ୍ରପାଦ୍ ।**
**ସଭୂମିଂ ବିଶ୍ୱତୋ, ବୃତ୍ୟାତ୍ୟତ୍ୟା ତିଷ୍ଠଦ୍ ଦଶାଙ୍ଗୁଳମ୍ ।''**

(ଋ-୧୦/ ୧୦/ ୯)

ଅର୍ଥାତ୍ ସେହି ବିରାଟ ମହାପୁରୁଷ, ତାଙ୍କର ଅନନ୍ତ ମସ୍ତକ, ଅନନ୍ତ ଚକ୍ଷୁ ଏବଂ ଅନନ୍ତ ଚରଣ, ସେ ବ୍ରହ୍ମାଣ୍ଡକୁ ସର୍ବତୋଭାବେ ପରିବେଷ୍ଟନ କରି ମଧ୍ୟ ତାହାର ଅତିରିକ୍ତ

ଦଶାଙ୍ଗୁଳ ପରିମିତ ସ୍ଥାନରେ ବ୍ୟାପ୍ତ, ଅର୍ଥାତ୍ ବିଶ୍ୱାତୀତ ରୂପରେ (Transcendented) ମଧ୍ୟ ଅବସ୍ଥିତ ଅଛନ୍ତି । ଏହି ସୂକ୍ତର ପଞ୍ଚମ ଶ୍ଲୋକରେ ଲେଖାଯାଇଛି –

**"ସ ଜାତୋ ଅତ୍ୟରିଚ୍ୟଦ୍ ପଶ୍ଚାଦ୍‌ଭୂମିମଥୋ ପୁରଃ ।"**

ଅର୍ଥାତ୍ ସେହି ପୁରୁଷଙ୍କଠାରୁ ଦେବ ମନୁଷ୍ୟାଦି ଜାତ ହୋଇଅଛନ୍ତି । ତାହା ପରେ ଭୂମି ଓ ଜୀବସମୂହର ସୃଷ୍ଟି ହୋଇଅଛି ।"ଏହିଠାରେ ଆମ୍ଭେମାନେ ମାନବିକ ସଂହତି ଓ ଐକ୍ୟର ଦାର୍ଶନିକ ତତ୍ତ୍ୱ ଏବଂ ସୂତ୍ରର ସନ୍ଧାନ ପାଉ । ଏହା ହିଁ ଭାରତୀୟ ସଂସ୍କୃତିର ମୂଳଦର୍ଶନ–ଯାହାକୁ ଆମେ ସର୍ବେଶ୍ୱରବାଦ ବା ଇଂରାଜୀରେ (Pantheism) କହୁ । ଏହି ପୃଥିବୀର ସମସ୍ତ ଜୀବନ ସେହି ମହାପୁରୁଷଙ୍କର ଛାୟାର ପ୍ରତିବିମ୍ବ । ଆମେ ସମସ୍ତେ ସେହି ମହାପୁରୁଷଙ୍କର ଅଙ୍ଗ ବିଶେଷ ।

**"ବ୍ରାହ୍ମଣୋସ୍ୟ ମୁଖମ୍ ଆସୀଦ୍ ବାହୁ ରାଜନ୍ୟ କୃତଃ ।**
**ଉରୁ ତଦ ଅସ୍ୟ, ଯଦ୍ ବୈଶ୍ୟ, ପଦଭ୍ୟାଂ ଶୁଦ୍ରୋ ଅଜାୟତ୍ ।"**

–ଋକ୍‌ବେଦ, ଦଶମ ମଣ୍ଡଳ–

ଅର୍ଥାତ୍ "ମାନବ ସମାଜ ସେହି ମହାପୁରୁଷଙ୍କର ଅଙ୍ଗ ଅଟେ । ବ୍ରାହ୍ମଣ, କ୍ଷତ୍ରିୟ, ଶୁଦ୍ର, ବୈଶ୍ୟ ସମସ୍ତେ ଯଥାକ୍ରମେ ଜ୍ଞାନ, ସଂସ୍କୃତି, ରାଜନୀତି, ବ୍ୟବସାୟ ଓ ଶ୍ରମ ଉପରେ ନିଜ ନିଜର ବୃତ୍ତି ପାଳନ କରି ସାମାଜିକ ପ୍ରଗତିର ସହାୟକ ହୋଇଥାନ୍ତି ।" ଏହି ପ୍ରକାର ବୈଦିକ ଚିନ୍ତାରେ, ଆଧୁନିକ ସମାଜର ଉତ୍କଟତମ ବ୍ୟାଧି "ଜାତି ପ୍ରଥା"ର ଚିହ୍ନ ମଧ୍ୟ ନ ଥିଲା । ଏହା ଶ୍ରମର ମର୍ଯ୍ୟାଦା ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥିଲା । ସମାଜର ସାଂସ୍କୃତି, ରାଜନୈତିକ ଓ ଅର୍ଥନୈତିକ ପ୍ରଗତି ପାଇଁ ବିଭିନ୍ନ ନାଗରିକଙ୍କୁ ସ୍ୱ ସ୍ୱ ବୃତ୍ତିରେ ପାରଙ୍ଗମ କରାଇ, କର୍ମକୌଶଳରେ ପରାକାଷ୍ଠା ପ୍ରଦର୍ଶନ କରିବେ–ଏହି ପ୍ରକାର ବୃତ୍ତି ବିଭାଗର ମୂଳ ଉଦ୍ଦେଶ୍ୟ ଥିଲା–କର୍ମବିଭାଗ । କିନ୍ତୁ କାଳକ୍ରମେ ଏହା ଜାତି ପ୍ରଥା ହିସାବରେ ପ୍ରଚଳିତ ହୋଇ, ସମାଜରେ ବିଭେଦ ଓ ଅନୈକ୍ୟ ସୃଷ୍ଟି କରିଥିଲା । ବୈଦିକ ସମାଜରେ ସାମାଜିକ ସଂହତି ଓ ଐକ୍ୟ ପାଇଁ ମୁନିଋଷିମାନଙ୍କ ପ୍ରାଣ କେତେ ଉଦ୍‌ବେଳିତ ଓ କେତେ ଯେ ଅଧୀର ହୋଇ ଉଠିଥିଲା, ଏହାର ନିଦର୍ଶନ ଆମେ ଦେଖିବାକୁ ପାଉ ଋକ୍‌ବେଦର ଦଶମ ମଣ୍ଡଳର ସଂଜ୍ଞାନ ସୂକ୍ତ ଶ୍ଲୋକରେ । ସେମାନେ ସେମାନଙ୍କର ସନ୍ଧ୍ୟା ପ୍ରାର୍ଥନା ସଙ୍ଗୀତ ମଧ୍ୟରେ ଗାଉଥିଲେ –

**"ସଂ ଗଚ୍ଛଧ୍ୱଂ, ସଂବଦଧ୍ୱଂ**
**ସଂ ବୋ ମନାଂସି, ଜାନତାମ୍**
**ଦେବା ଭାଗଂ ଯଥା ପୂର୍ବେ**
**ସଂଜ୍ଞାବାନ୍ ଉପାସତେ** ।(ଋକବେଦ.୧୦/୧୨୯-୧/୨୬)
**ସମାନୋ ମନ୍ତ୍ରଃ ସମିତିଃ ସମାନୀ,**

**ସମାନଂ, ମନଃ ସହଚିତ୍ତମେଷାମ**
**ସମାନଂ, ମନ୍ତ୍ରଂ ଅଭିମନ୍ତ୍ରୟେବଃ,**
**ସମାନେନ୍ ବୋ ହବଷ୍କୁହୋସି ।୩।**
**ସମାନୀ ବ ଆକୁତିଃ**
**ସମାନୀ ହୃଦୟାନି ବଃ,**
**ସମାନସ୍ତୁ ବୋ ମନୋ**
**ଯଥାବଃ, ସୁମହାସତି ।୪।**(ଋକ୍ ବେଦ ଦଶମ ମଣ୍ଡଳ-୧୨୯/୩/୪)

ଅର୍ଥାତ୍ ''ତୁମ୍ଭେମାନେ ସମ୍ମିଳିତ ହୁଅ, ଐକ୍ୟବଦ୍ଧ ବାକ୍ୟ ପ୍ରୟୋଗ କର । ତୁମ୍ଭମାନଙ୍କ ମନ ସମୂହ ସମାନ ରୂପେ ଜ୍ଞାତ ହେଉ । ପୂର୍ବବର୍ତ୍ତୀ ଦେବତା ଯେପରି ସମଚିତ୍ତ ହୋଇ ଘୃତ ଗ୍ରହଣ କରିଥିଲେ, ତୁମ୍ଭେମାନେ ସେପରି ଅନ୍ନ ପ୍ରଭୃତି ଗ୍ରହଣ କର । ସେମାନଙ୍କର ସ୍ତୁତି ଏକପ୍ରକାର । ଅନୁକରଣ ମଧ୍ୟ ଏକ ପ୍ରକାର । ବିଶ୍ୱର ଜ୍ଞାନ ଏକ ବିଷୟରେ ଏକୀଭୂତ ହେଉ-ମୁଁ ମଧ୍ୟ ତୁମ୍ଭମାନଙ୍କ ପରି ମନ୍ତ୍ରକୁ ଐକ୍ୟ ବିଧାନ ନିମିତ୍ତ ସଂସ୍କାର କରେ । ହେ ଦେବଗଣ ! ତୁମ୍ଭ ସମସ୍ତଙ୍କର, ସାଧାରଣ ହବି ଦ୍ୱାରା ମୁଁ ଆହୁତି ପ୍ରଦାନ କରୁଅଛି । ତୁମ୍ଭମାନଙ୍କର ସଂକଳ୍ପ ସମାନ ହେଉ । ତୁମ୍ଭମାନଙ୍କର ହୃଦୟ ସମୂହ ଓ ତୁମ୍ଭମାନଙ୍କ ଅନ୍ତଃକରଣ ସମାନ ହେଉ, ଯେପରି ତୁମ୍ଭମାନଙ୍କ ସମୟରେ ପରମ ଐକ୍ୟ ପ୍ରତିଷ୍ଠିତ ହୁଏ, ସମସ୍ତେ ସୁଖରେ ସୁଖୀ ଓ ସୁସଂହତ ଜୀବନଯାପନ କରନ୍ତୁ ।'' ଏହା ହିଁ ଋଗ୍‌ବେଦରେ ସାମାଜିକ ଐକ୍ୟର ରୂପ ଓ ଚିନ୍ତାଧାରା ।

ବୈଦିକ ସଂସ୍କୃତିର କଳ୍ପନା ମଧ୍ୟରେ ଆଉ ଏକ ବୈଶିଷ୍ଟ୍ୟ ହେଉଛି ସାମାଜିକ ସହନଶୀଳତା । ବିଜାତୀୟ ଧର୍ମପ୍ରତି ଉଦାର ନୀତି ଆଚରଣ ଯୋଗୁ ବିଭିନ୍ନ ଦେଶ ବିଦେଶରୁ ଆସୁଥିବା ଲୋକଙ୍କ ମନରେ ଭାରତୀୟ ଧର୍ମ ପ୍ରତି ମୈତ୍ରୀ ଭାବ ସୃଷ୍ଟି ହୋଇଥିଲା ।

ଋଗ୍‌ବେଦର ପଞ୍ଚମ ମଣ୍ଡଳର ପଞ୍ଚାଅଶୀ ସୂକ୍ତରେ ଥିବା ସାରମର୍ମ ହେଉଛି - ହେ ବରୁଣ, ବନ୍ଧୁ, ଭ୍ରାତା ଏପରି କି ବିଦେଶୀମାନଙ୍କ ପ୍ରତି ଯଦି ଆମେ କୌଣସି ପାପ କାର୍ଯ୍ୟ କରିଥାଉ, ସେ ପାପରୁ ଆମକୁ ମୁକ୍ତ କର ଅର୍ଥାତ୍ ଅନ୍ୟ ଅର୍ଥରେ କହିବାକୁ ଗଲେ, ବିଦେଶୀ ଏବଂ ପଡ଼ୋଶୀମାନଙ୍କୁ ଆମେ ଘୃଣା ନ କରି, ଭଲ ପାଉ । ସମସ୍ତଙ୍କୁ ମୈତ୍ରୀ ଭାବରେ ଆପଣାର କରିପାରୁ -ଯଜୁର୍ବେଦର ନିମ୍ନଲିଖିତ ଶ୍ଳୋକଟି ଆର୍ଯ୍ୟ ସଂସ୍କୃତିର ମୈତ୍ରୀ ଭାବର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ-

**ମିତ୍ରସ୍ୟ ମା ଚକ୍ଷୁସା ସର୍ବାଣି ରୂପନି ସମୀକ୍ଷନ୍ତାମ**
**ମିତ୍ରସ୍ୟାହାଂ ଚକ୍ଷୁଷା ସର୍ବାଣି ଭୂତାନି -ସମୀକ୍ଷ**
**ମିତ୍ରସ୍ୟ ଚକ୍ଷୁଷା, ସମୀକ୍ଷାମହେ ।** (ଯ.୩୬-୧୮)

ଅର୍ଥାତ୍ ''ଜଗତର ସମସ୍ତ ପ୍ରାଣୀ ମୋତେ ବନ୍ଧୁତ୍ୱ ଦୃଷ୍ଟିରେ ଦେଖନ୍ତୁ, ମୁଁ ସେହିପରି ଜଗତର ସମସ୍ତ ପ୍ରାଣୀକୁ ନିଜର ବନ୍ଧୁ ଭାବରେ ଦେଖେ । ଆମ୍ଭେମାନେ ସମସ୍ତେ ପରସ୍ପରକୁ ବନ୍ଧୁ ତା ଦୃଷ୍ଟିରେ ସମାଦର କରୁ ।'' ଆର୍ଯ୍ୟ ସଂସ୍କୃତିର ଏହି ଉଦାର ମୈତ୍ରୀ ଓ ସହନଶୀଳ ନୀତି ଭାରତର ଜାତୀୟ ସଂହତିର ମୂଳପତ୍ତନକୁ ସୁଦୃଢ଼ କରି ଆସିଅଛି । ଆର୍ଯ୍ୟ ଅନାର୍ଯ୍ୟ ସଂସ୍କୃତିର ମୂଳପତ୍ତନକୁ ସୁଦୃଢ଼ କରିଆସିଅଛି । ଆର୍ଯ୍ୟ ଅନାର୍ଯ୍ୟ ସଂସ୍କୃତିର ସମନ୍ୱୟରେ ବୈଦିକ ସଂସ୍କୃତିର ସାର୍ବଜନୀନତା ଓ ମହତ୍ତ୍ୱ ପ୍ରତିପାଦିତ ହୋଇଛି । କେବଳ ଏତିକି ନୁହେଁ, ଅନାର୍ଯ୍ୟ ମଧରେ ଥିବା ଶୈବ, ଶାକ୍ତ ଧର୍ମାଲମ୍ବୀ, ଆର୍ଯ୍ୟମାନଙ୍କରେ ଥିବା ବୈଷ୍ଣବ ଧର୍ମାବଲମ୍ବୀ ଓ ବୌଦ୍ଧ, ଜୈନ ସମସ୍ତେ ଭାରତୀୟ ଧର୍ମ ଓ ସଂସ୍କୃତି ମଧରେ ଲୀନ ଓ ଏକୀଭୂତ ହୋଇଯାଇଛନ୍ତି । ଏହି ବୈଚିତ୍ର୍ୟ ମଧରେ ଐକ୍ୟଭାବ ଭାରତୀୟ ଜାତୀୟ ଐକ୍ୟର ଏକ ବୈଶିଷ୍ଟ୍ୟ ।

ଆମ ପୁରାଣରେ ଭାରତର ସାତଟି ପ୍ରସିଦ୍ଧ ତୀର୍ଥଭୂମି କଥା ବର୍ଣ୍ଣନା କରାଯାଇଅଛି । ଜାତି-ଧର୍ମ-ନିର୍ବିଶେଷରେ ଏହି ସାତଟି ତୀର୍ଥ ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ମନରେ ଧାର୍ମିକ ଭାଷାଭାଷୀ ପ୍ରଦେଶରୁ ଲୋକମାନେ ଏହି ପୀଠସ୍ଥଳୀରେ ଆସି ଆଧାତ୍ମିକ ଭାବନାର ଆଦାନପ୍ରଦାନ କରୁଥିଲେ ଏବଂ ମହାଆନନ୍ଦ ରେ ଗାଉଥିଲେ -

**''ଅଯୋଧା, ମଥୁରା, ଗୟା, କାଶୀ, କାଞ୍ଚୀ, ଅବନ୍ତିକା**
**ପୁରୀ ଦ୍ୱାରାବତୀ ଚୈବ ସପ୍ତୈତେ ମୋକ୍ଷଦାୟକମ୍ ।''**

ଏହା ହିଁ ଥିଲା ବୈଦିକ ସାହିତ୍ୟ ଓ ପୁରାଣରେ ସାମାଜିକ ସଂହତି ଓ ଐକ୍ୟର କଳ୍ପନା ।

ଆଜି ବିଂଶ ଶତାବ୍ଦୀରେ ବୈଦିକ ସଂହତିର ସ୍ୱପ୍ନ ଓ କଳ୍ପନାକୁ ସଂପୂର୍ଣ୍ଣଭାବେ ରୂପାୟିତ ହେବାକୁ ଆଉ ଯେ କେତେ ବର୍ଷ ଲାଗିବ, ତାହା କିଏ କହିବ ? କିନ୍ତୁ ସେହି ବୈଦିକ ସଂସ୍କୃତିର ଭାଷା ଓ ସ୍ୱପ୍ନକୁ ଭାରତରେ ବାସ୍ତବରେ ରୂପାୟିତ କରିବାର ଗୁରୁଦାୟିତ୍ୱ ଆଜି ଆମ ସମସ୍ତଙ୍କର । କାରଣ ଆଜି ସାମାଜିକ ନିରାପତ୍ତା ବିପଦସଙ୍କୁଳ ଆରଣ୍ୟର ଅନ୍ଧକାର ମଧରେ ଏବେ ବି ଗତି କରୁଛି । ରାଜନୈତିକ ହିଂସା, ଧର୍ମଗତ ଓ ଭାଷାଗତ ଆନ୍ଦୋଳନ ଏବେ ବି ଆମର ଜାତୀୟ ଜୀବନକୁ ଦୁର୍ବଳ କରି ପକାଉଛି ।



# ଭାରତୀୟ ସଂସ୍କୃତିରେ ଅବତାରବାଦ : ଏକ ଅଧ୍ୟୟନ

ଭାରତୀୟ ସଂସ୍କୃତିରେ ଜୀବନ-ଦର୍ଶନର ଅଧ୍ୟୟନ କେବଳ ଦାର୍ଶନିକ ଚିନ୍ତାଧାରାରେ ପର୍ଯ୍ୟବେଶିତ ନୁହେଁ, ଏହାର ମୂଳ ଉଦ୍ଦେଶ୍ୟ ହେଉଛି, ଏହି ପୃଥିବୀରେ ଧୂଳି ଧୂସରିତ କର୍ମ ଝଞ୍ଜାଳମୟ ଜୀବନକୁ ସୁନ୍ଦର ସୁମହାନ ଓ ମଙ୍ଗଳମୟ କରିବା । ଭାରତୀୟ ସଂସ୍କୃତିର ସାମ୍ୟ, ମୈତ୍ରୀ, ସହନଶୀଳତା, ସର୍ବଧର୍ମର ସମନ୍ୱୟ ଓ ଗଭୀର ମାନବବାଦୀ ଭାବଧାରା ଯୁଗ ଯୁଗ ଧରି ଭାରତୀୟ ଜୀବନକୁ ଉଦ୍‌ବୁଦ୍ଧ କରିଆସିଛି । କେତେକ ସମାଲୋଚକଙ୍କ ମତରେ ଭାରତୀୟ ଧର୍ମ ଓ ସଂସ୍କୃତି, ପଳାୟନ-ପନ୍ଥୀ ଓ ଆଧ୍ୟାତ୍ମିକ ଚିନ୍ତାଧାରାରେ ପର୍ଯ୍ୟବେଶିତ । ତେଣୁ ସେମାନେ ଏହି ସଂସ୍କୃତିକୁ ଅବାସ୍ତବ, ନୈରାଶ୍ୟବାଦୀ ଓ ଜୀବନଧର୍ମୀ ବିରୋଧୀ-ଚିନ୍ତାଧାରାରେ ପରିପୁଷ୍ଟ ବୋଲି କହିଥାନ୍ତି । Mr. William Archer ତାଙ୍କ "India and the Future" ପୁସ୍ତକରେ ଏହି ପ୍ରକାର ଏକ ଭ୍ରାନ୍ତ ଚିନ୍ତାଧାରାରେ ପ୍ରଭାବିତ ହୋଇ ଭାରତୀୟ ସଂସ୍କୃତିର ମୂଳ ଚିନ୍ତାଧାରାକୁ ହେୟ, ଅସାର ବୋଲି ଅଭିଯୁକ୍ତ କରିଅଛନ୍ତି । ଏହି ମତକୁ ଖଣ୍ଡନ କରି ଶ୍ରୀ ଅରବିନ୍ଦ ତାଙ୍କର ବିଖ୍ୟାତ ଗ୍ରନ୍ଥ The Foundation of Indian Culture ରେ ଭାରତୀୟ ସଂସ୍କୃତିର ମହତ୍ତ୍ୱକୁ ବିଶ୍ଳେଷଣ କରି ପାଶ୍ଚାତ୍ୟ ଚିନ୍ତାଧାରାକୁ ନୂତନ ଦିଗ୍‌ଦର୍ଶନ ଦେଇ ଅଛନ୍ତି ।

**ଅବତାରବାଦ :**

ଅବତାରବାଦ ଭାରତୀୟ ସଂସ୍କୃତିର ଏକ ଜୀବନଧର୍ମୀ ଚିନ୍ତାଧାରା ଯାହା ଜୀବନକୁ ସୁମହାନ ଉନ୍ନତ ଏବଂ ଶାନ୍ତିମୟ କରିବାର ଏକ ଦର୍ଶନ । ଏହା ଯାଦୁବିଦ୍ୟା ନୁହେଁ କି ଅନ୍ଧ ପୌତ୍ତଳିକତା ନୁହେଁ । Mr. William Archerଙ୍କ ମତରେ ଏହା ଅଯୌକ୍ତିକ ଓ ଅନ୍ଧ ପୌତ୍ତଳିକତା । ଶ୍ରୀଅରବିନ୍ଦ ଏ ସମ୍ପର୍କରେ ତାଙ୍କର ଚିନ୍ତା ପ୍ରକାଶ କରି ଦର୍ଶାଇ ଅଛନ୍ତି - ଯେଉଁ ସକଳ ଭୌତିକ ନିୟମ ଅନୁସାରେ ଜାଗତିକ ମରଣଶୀଳ ପ୍ରାଣୀଗଣ ପରିଚାଳିତ ଓ ନିୟନ୍ତ୍ରିତ ହୁଅନ୍ତି ବୋଲି ଯୁକ୍ତିବାଦୀ ବୈଜ୍ଞାନିକମାନେ ମନେ କରନ୍ତି

ତାହାର ଏକଚ୍ଛତ୍ରବାଦୀ ରାଜତ୍ୱରେ ବିଶ୍ୱାସ ନ କରି ଯାହାର ବାହ୍ୟ ପ୍ରମାଣ କିଛି ମିଳେ ନାହିଁ, ଏପରି  ସବୁ ଶକ୍ତି ଓ ପ୍ରଭାବ ଜୀବନ ଉପରେ କାର୍ଯ୍ୟକରେ ବୋଲି ବିଶ୍ୱାସ କରାହୁଏ ଏବଂ ସକଳ କାର୍ଯ୍ୟରେ ସେମାନଙ୍କ ଉପରେ ଦୃଷ୍ଟିରଖି ଜୀବନଯାପନ ପାଇଁ ଚେଷ୍ଟା କରୁଥିବାର ଦେଖାଯାଏ । ଆମ ସମାଲୋଚକଙ୍କ ନିକଟରେ ଏହିସବୁ ବିଷୟ ଏକ ପ୍ରକାର ଦୁର୍ବୋଧ ବିଶୃଙ୍ଖଳା, ସର୍ବପ୍ରାଣବାଦ (animism) ବିକୃତ ଅନ୍ଧ ଲୋକ ବିଶ୍ୱାସ । ଭାରତୀୟ ଚିନ୍ତାଧାରା ଏହି ସକଳ ବସ୍ତୁକୁ ଯେଉଁ ଅର୍ଥ ଦାନ କରେ, ଯେଉଁ ଆଧ୍ୟାତ୍ମିକ ଭାବର ବ୍ୟାଖ୍ୟା କରେ ତାହା Mr. Archerଙ୍କ ପରି ଲୋକଙ୍କ ପକ୍ଷରେ ଆଦୌ ବୁଝିବା ବା ବିଶ୍ୱାସ କରିବା ସମ୍ଭବ ନୁହେଁ । ତେଣୁ ଏହିସବୁ ବିଷୟକୁ ନିରର୍ଥକ ଚାତୁର୍ଯ୍ୟମୟ, ନିଷ୍ପ୍ରୟୋଜନ, ବିକୃତ ମସ୍ତିଷ୍କ ପ୍ରସୂତ ପ୍ରତୀକ ସମାରୋହ ବୋଲି ସେ ମନେ କରନ୍ତି ।[୧]

ହିନ୍ଦୁଧର୍ମର ମୂଳଭିତ୍ତି ଏକେଶ୍ୱରବାଦ Pantheism ଉପରେ ପ୍ରତିଷ୍ଠିତ କିନ୍ତୁ ଜୀବନରେ ଅତିମାନବିକ ଶକ୍ତିକୁ ଉପଲବ୍ଧ କରିବାକୁ ହେଲେ ସାଧନା ବଳରେ ବହୁପଥ, ବହୁମତ ଗ୍ରହଣ କରି ଏକ ପରମ ସତ୍ୟରେ (Absolute truth) ଉପନୀତ ହେବାକୁ ପଡ଼େ । ତେଣୁ ଭାରତରେ ସାକାର ଓ ନିରାକାର ସବୁ ପ୍ରକାର ଉପାସନା ପଦ୍ଧତି ପ୍ରଚଳିତ । ଆତ୍ମା ଅବିନଶ୍ୱର ଏବଂ ଏହା ଜଡ଼ ଶରୀରଠାରୁ ପୃଥକ୍ । ଏହି ଆତ୍ମା ବିଷୟରେ ଶ୍ରୀମଦ୍ ଭଗବତ୍ ଗୀତାରେ ଉଲ୍ଲେଖ ରହିଛି...

**ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି, ନୈନଂ ଦହତି ପାବକଃ**
**ନଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ।**[୨]

ଏହି ଆତ୍ମାର ସ୍ୱରୂପ ଜାଣିପାରିଲେ ହିନ୍ଦୁଧର୍ମ ବିଶ୍ୱାସ କରେ ଯେ, ଜୀବନକୁ ଶାନ୍ତିମୟ ମଙ୍ଗଳମୟ କରାଯାଇପାରିବ । ଏହି ଆତ୍ମାର ସ୍ୱରୂପ ସମ୍ବନ୍ଧରେ ଉପନିଷଦରେ ବର୍ଣ୍ଣିତ ହୋଇଅଛି ଯେ, ମଣିଷର ଆତ୍ମା ଅବିନଶ୍ୱର ଓ ବିଶ୍ୱ ଆତ୍ମାର ଏକ ଅଂଶ ଏବଂ ସେହି ବିଶ୍ୱ ଆତ୍ମା ହେଉଛନ୍ତି ସଚ୍ଚିଦାନନ୍ଦ ବ୍ରହ୍ମ–ଯାହାକୁ ଉପଲବ୍ଧ କରିବାକୁ ହେଲେ ହିନ୍ଦୁଶାସ୍ତ୍ରରେ ଚାରୋଟି ପଥର ବର୍ଣ୍ଣନା କରାଯାଇଅଛି । ତାହା ହେଉଅଛି ଜ୍ଞାନଯୋଗ, କର୍ମଯୋଗ, ଭକ୍ତିଯୋଗ ଓ କର୍ମସନ୍ୟାସଯୋଗ । ଉପନିଷଦର ଏହି "ତତ୍ତ୍ୱମସି"ବାଣୀ ହେଉଛି–ସେହି ମହାଶକ୍ତିର ଏକ ଦର୍ଶନ ।

କିନ୍ତୁ ମଣିଷ ପୃଥିବୀରେ, ବିଭିନ୍ନ ପ୍ରକାର ଅଜ୍ଞାନ କୁସଂସ୍କାରରର ବଶବର୍ତ୍ତୀ ହୋଇ ମଣିଷ ଜୀବନ ଓ ସାମାଜିକ ଅବସ୍ଥାକୁ ବିପଥଗାମୀ କରାଏ । ବିଭିନ୍ନ ଦେଶର ବିଭିନ୍ନ ଧର୍ମାବଲମ୍ବୀ ମଣିଷ ଜାତି ମଧ୍ୟରେ ଏକ ଆଧ୍ୟାତ୍ମିକ ଶକ୍ତି ନିହିତ– ଏକ ମହାଶକ୍ତିରୁ ସବୁ ପ୍ରାଣର–ଉଦ୍ଭବ'– ଏହି ଭାବରେ ସମସ୍ତେ ଉଦ୍‌ବୁଦ୍ଧ ହୋଇପାରିଲେ ପୃଥିବୀରେ

ଶାନ୍ତି ଓ ଐକ୍ୟ ସମ୍ଭବ ହୋଇପାରନ୍ତା । କିନ୍ତୁ ଆଜି ବିଂଶ ଶତାବ୍ଦୀରେ ମଧ୍ୟ ବର୍ଣ୍ଣବୈଷମ୍ୟ, ଧର୍ମାନ୍ଧତା ଓ ବିଖଣ୍ଡିତ ଅଯୌକ୍ତିକ ଚିନ୍ତାଧାରାରେ ବିଭିନ୍ନ ଦେଶରେ ଅଶାନ୍ତିର ନିଆଁ ଜଳୁଛି । ଏହି ପ୍ରକାର ସାମାଜିକ ଅଧୋଗତି ଓ ସଙ୍କଟବେଳେ ଅତି ମାନବ ଶକ୍ତିର ନେତୃତ୍ୱର ଆବଶ୍ୟକତା ରହିଛି । ଯୀଶୁ, ମହମ୍ମଦ, ବୁଦ୍ଧ, ଶ୍ରୀରାମକୃଷ୍ଣ ପରମହଂସ, ମହାତ୍ମାଗାନ୍ଧୀ ପରି ମହା ମାନବମାନେ ଆବିର୍ଭୂତ ହୋଇ ସମାଜରେ ଶାନ୍ତି ପ୍ରତିଷ୍ଠା ପାଇଁ ଜୀବନକୁ ଉତ୍ସର୍ଗ କରିଅଛନ୍ତି-ମାନବ ଜାତି ସେବାରେ, ଏହି ମହାନ୍ ସତ୍ୟ ଶ୍ରୀମଦ୍ ଭଗବତ ଗୀତାରେ ଅତି ପ୍ରାଞ୍ଜଳ ଭାବରେ ବର୍ଣ୍ଣିତ ହୋଇଛି-ଶ୍ରୀକୃଷ୍ଣ, ହିଂସାର ଦମନ ପାଇଁ, ସମାଜର ନିରାପତ୍ତା ପାଇଁ ଯୁଦ୍ଧର ଆବଶ୍ୟକତା ସମ୍ବନ୍ଧରେ ବୁଝାଇବାକୁ ଯାଇ ଅର୍ଜ୍ଜୁନଙ୍କୁ କହିଛନ୍ତି -

**ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ**
**ଅଭ୍ୟୁଦ୍‌ଥାନମ ଦ୍ଧଧର୍ମସ୍ୟ ତଦାତ୍ମାନଂ ସୃଜାମହ୍ୟମ୍ ।୨।**

ଅର୍ଥାତ୍ ହେ ଅର୍ଜ୍ଜୁନ, "ଯେତେବେଳେ ଧର୍ମର ଗ୍ଲାନି ହୁଏ, ଅଧର୍ମ ବୃଦ୍ଧିପାଏ, ସେତେବେଳେ ମୁଁ ନିଜ ରୂପରେ ଆବିର୍ଭୂତ ହୁଏ ।" ପୁଣି ପରବର୍ତ୍ତୀ ଶ୍ଳୋକରେ-ଶ୍ରୀକୃଷ୍ଣ କହିଛନ୍ତି -

**ପରିତ୍ରାଣାୟ ସାଧୁନାଂ, ବିନାଶାୟଚ ଦୁଷ୍କୃତାମ୍ ।**
**ଧର୍ମ ସଂସ୍ଥାପନାର୍ଥାୟ, ସମ୍ଭାବାମି ଯୁଗେଯୁଗେ ।୩।**

ଅର୍ଥାତ୍-ସାଧୁ ପୁରୁଷମାନଙ୍କ ଉଦ୍ଧାର ପାଇଁ ଦୁଷ୍କୃତମାନଙ୍କୁ ଧ୍ୱଂସ କରି ଧର୍ମ ସ୍ଥାପନ ପାଇଁ ମୁଁ ବିଭିନ୍ନ ଯୁଗରେ ଆବିର୍ଭୂତ ହୁଏ ।

ଏହିଠାରେ ହିନ୍ଦୁଧର୍ମରେ ଅବତାରବାଦକୁ ସ୍ୱୀକାର କରାଯାଉଅଛି-- ଏକ ସାମାଜିକ ସୁଖ ଓ ଶାନ୍ତି ପ୍ରତିଷ୍ଠା ପାଇଁ, କାରଣ ଧର୍ମ ପ୍ରତିଷ୍ଠିତ ହେଲେ ସମାଜରେ ଶାନ୍ତି ଓ ସୁଖ ସ୍ଥାୟୀ ହୁଏ ।

## ଧର୍ମାନ୍ଧତାର କୁପରିଣତି :

କିନ୍ତୁ ଦେଖାଯାଇଛି ଯୁଗେଯୁଗେ - ଏହି ଅବତାରବାଦ ସାମାଜିକ ଓ ଆଧାତ୍ମିକ ଉନ୍ନତିର ଏକ ଶକ୍ତି ହିସାବରେ ଗୃହୀତ ହେବା ପରିବର୍ତ୍ତେ ବ୍ୟକ୍ତିବାଦର ଅହଂକାର ମାଧ୍ୟମ ରୂପେ ବ୍ୟବହୃତ ହୋଇ ଧର୍ମୀୟ ମତାନ୍ଧତାକୁ ସନ୍ତୁଷ୍ଟ କରି, ସାମାଜିକ ବିପର୍ଯ୍ୟୟ ସୃଷ୍ଟି କରିଛି । ବୁଦ୍ଧଙ୍କ ପରେ ବୌଦ୍ଧଧର୍ମରେ ବଜ୍ରଯାନର ତାନ୍ତ୍ରିକତା ପଶିବା ଫଳରେ ବୁଦ୍ଧଙ୍କ ଅଷ୍ଟମାର୍ଗକୁ ତାଙ୍କ ଶିଷ୍ୟମାନେ ଭୁଲିଗଲେ । ଯୀଶୁ କ୍ରୁଶବିଦ୍ଧ ହେଲା ପରେ, ଖ୍ରୀଷ୍ଟ ଧର୍ମରେ ବିଭିନ୍ନ ଧାର୍ମିକ ଗୋଷ୍ଠୀ ମଧ୍ୟରେ ମତାନ୍ଧତା ସୃଷ୍ଟିହେଲା । ସେହିପରି ମହାତ୍ମା ଗାନ୍ଧୀଙ୍କ ହତ୍ୟା ପରେ ଗାନ୍ଧୀଙ୍କ ବାଣୀ ଆମେ ଭୁଲିଗଲୁ । ଅନେକେ ଗାନ୍ଧୀବାଦ

ନାମରେ ଗାନ୍ଧୀ ଟୋପି ପିନ୍ଧି ରାଜନୀତିରେ କ୍ଷମତା ଲାଳସାରେ ଲିପ୍ତ ହେଲେ ଏବଂ ପରସ୍ପରର ଚରିତ୍ର ସଂହାର କରି ସମାଜ ଓ ରାଜନୀତି କ୍ଷେତ୍ରରେ ଅସ୍ଥିରତା ସୃଷ୍ଟି କରୁଛନ୍ତି ।

ଆଜି ମଧ୍ୟ ଆମ ଭାରତର କେତେକ କ୍ଷେତ୍ରରେ ମହାମାନବଙ୍କ ବାଣୀ ଏକ ଏକ ସ୍ୱତନ୍ତ୍ର ଧାର୍ମିକ କ୍ଷୁଦ୍ରକ୍ଷୁଦ୍ର ଗୋଷ୍ଠୀ ସୃଷ୍ଟି କରିଅଛି ଏବଂ ଏହାଦ୍ୱାରା ସାମାଜିକ ଅନୈକ୍ୟ ଓ ସଂକୀର୍ଣ୍ଣତା ଭାରତୀୟ ସଂସ୍କୃତି ଓ ସମାଜକୁ ଦୁର୍ବଳ କରୁଛି । ଘରେ ଘରେ ଶ୍ରୀଅରବିନ୍ଦ, ସତ୍ୟସାଇ ବାବା, ଶ୍ରୀରାମକୃଷ୍ଣ, ଶିବାନନ୍ଦ ଓ ଦାଦାଙ୍କ ମୂର୍ତ୍ତି ଫଟୋ ରଖି ପୂଜା ଅର୍ଚ୍ଚନା ଚାଲିଛି, ଏଣେ ଅନ୍ୟ ଦିଗରେ ପ୍ରତ୍ୟେକ ସହର ଓ ଗ୍ରାମରେ ଜାତି, ଉପଜାତି ଓ ବିଭିନ୍ନ ଧର୍ମ ସମ୍ପ୍ରଦାୟ ମଧ୍ୟରେ ଖଣ୍ଡଯୁଦ୍ଧ, ରକ୍ତାକ୍ତ ସଂଘର୍ଷ ଚାଲିଛି । ଘରେ ଅବତାର ପୂଜା, ବାହାରେ କଳାବଜାରୀ, ହିଂସା, ଶୋଷଣ ଓ ଅତ୍ୟାଚାର ଚାଲିଛି । କେତେବେଳେ ପଞ୍ଜାବ ନଗର, କେତେବେଳେ ହାଇଦ୍ରାବାଦ, କେତେବେଳେ ଦିଲ୍ଲୀ କିମ୍ବା ଆଗ୍ରା, ଅଗରତଲା ବା ଗୌହାଟୀରେ ହିଂସାର ନାରକୀୟ ତାଣ୍ଡବ ଲୀଳାର ବିଭତ୍ସ ଦୃଶ୍ୟ ଦେଖିବାକୁ ମିଳୁଛି । ଆଜି ଆମକୁ ଗଭୀର ଭାବରେ ଚିନ୍ତା କରିବା କଥା – ଏହି ଅବତାରବାଦ ଆମକୁ ନିଷ୍କ୍ରିୟତା, ସଂକୀର୍ଣ୍ଣ ଗୋଷ୍ଠୀଗତ ମନୋଭାବରେ ଜର୍ଜରିତ ନକରୁ । ଆମେ ସମସ୍ତେ ଏକ ମହାନ୍ ଶକ୍ତି ମାନବ ସମାଜର କ୍ଷୁଦ୍ର ଅଂଶ । ସମାଜରେ ସମୂହ ସୁଖରେ ବ୍ୟକ୍ତିର ସୁଖ ଓ ଶାନ୍ତି ନିହିତ । ଏହି ଚିନ୍ତାରେ ଆମେ ଉଦ୍‌ବୁଦ୍ଧ ହୋଇ ଆସନ୍ତୁ–ଜାତି–ଧର୍ମ–ବର୍ଣ୍ଣ–ନିର୍ବିଶେଷର ଏହି ଦୁଃସ୍ଥ ସମାଜରେ ମହାଶକ୍ତିର, ଚେତନାର ଉପଲବ୍ଧି ପାଇଁ ଆରାଧନା କରିବା । ସେହି ଶକ୍ତି, ସେହି ଚେତନା ଆମ ମଧ୍ୟରେ ସାମ୍ୟ, ମୈତ୍ରୀ ଓ ପ୍ରେମଭାବ ଆଣି ଦେଉ–ଭଗବତ ସଂହତି ଆଣି ଦେଉ–ଆସନ୍ତୁ ଆମେ ଏକ ସ୍ୱରରେ ଏହି ଶାରଦୀୟ ସନ୍ଧ୍ୟାରେ ଆରାଧନା କରିବା – ସେହି ମହାଶକ୍ତି, ଯାହା ଆମ ମନରେ ଭରିଦେବ –ଶାନ୍ତି ଓ ସଂହତିର ଭାବ ।

**ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା**
**ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ।**[୫]



**୧. ଶ୍ରୀ ଅରବିନ୍ଦ ଭାରତୀୟ ସଂସ୍କୃତିର ଆଧାର – ପୃ ୧୨୭**
**୨. ଭଗବଦ୍ ଗୀତା – ୨ୟ ଅଧ୍ୟାୟ – ଶ୍ଳୋକ**
**୩. ଭଗବଦ୍ ଗୀତା – ୪ର୍ଥ ଅଧ୍ୟାୟ– ୭ ଶ୍ଳୋକ**
**୪. ଭଗବଦ୍ ଗୀତା – ୪ର୍ଥ ଅଧ୍ୟାୟ – ୮ ଶ୍ଳୋକ**
**୫. ଶ୍ରୀଶ୍ରୀ ଚଣ୍ଡୀ – ୫ମ ଅଧ୍ୟାୟ– ଦେବୀଦୂତ ସମ୍ବାଦ–୩୨,୩୩,୩୪**

# ଭାରତୀୟ ସଂସ୍କୃତି ଓ ସଙ୍କଟ

"ମିତ୍ରସା ମା ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷନ୍ତାମ୍
ମିତ୍ରସ୍ୟାହଂ ଚକ୍ଷୁଷା ସର୍ବାଣି ଭୂତାନି ସମୀକ୍ଷେ
ମିତ୍ରସ୍ୟ ଚକ୍ଷୁଷା ସମୀକ୍ଷାମହେ ।"(ଯଜୁ.-୩୮ : ୧୮)

"May all beings look on me with
the eye of a friend
May I look on all beings with
the eye of a friend
May we look on one another with
eye of friend." (Y-38, 18)

ଭାରତୀୟ ସଂସ୍କୃତି ଅତୀବ ମହାନ୍ । ଏହି ମହାନ୍ ସଂସ୍କୃତିର ମୂଲ୍ୟବୋଧକୁ ପୃଥିବୀର ବହୁ ମନୀଷୀମାନେ ଉଚ୍ଚ ପ୍ରଶଂସା କରିଛନ୍ତି । ପାଶ୍ଚାତ୍ୟ ମନୀଷୀମାନଙ୍କ ମଧ୍ୟରେ Romain Rolland, Charles wilkin, Man Muller, Sir William Jones, John Christopher, Isherwood ପ୍ରଭୃତି ଭାରତୀୟ ସଂସ୍କୃତିପ୍ରେମୀମାନେ ଭାରତର ଧର୍ମ ଦର୍ଶନ ଉପରେ ଅତି ମୂଲ୍ୟବୋଧଭିତ୍ତିକ ପୁସ୍ତକମାନ ପ୍ରଣୟନ କରିଛନ୍ତି । ଭାରତୀୟ ମନୀଷୀମାନଙ୍କ ମଧ୍ୟରେ ଶ୍ରୀଅରବିନ୍ଦ, ଗାନ୍ଧିଜୀ, ଆନନ୍ଦକୁମାର ସ୍ୱାମୀ, ବାଳ ଗଙ୍ଗାଧର ତିଳକ, ସର୍ବପଲ୍ଲୀ ରାଧାକୃଷ୍ଣନ ଭାରତୀୟ ସଂସ୍କୃତି ଓ ଦର୍ଶନ ଉପରେ ଅତି ଉଚ୍ଚକୋଟୀର ପୁସ୍ତକମାନ ପ୍ରଣୟନ କରିଯାଇଛନ୍ତି ଓ ପାଶ୍ଚାତ୍ୟ ଦେଶରେ ଭାରତୀୟ ସଂସ୍କୃତିର ମହତ୍ତ୍ୱ ଓ ଶ୍ରେଷ୍ଠତ୍ୱକୁ ପ୍ରତିପାଦନ କରି ଯାଇଛନ୍ତି । ଆଜି ବିଂଶ ଶତାବ୍ଦୀର ଶେଷ ଭାଗରେ ଯେତେବେଳେ ଭାରତରେ ଉଗ୍ରଗୋଷ୍ଠୀଗତ ସମାଜ, ରାଜନୀତି ଓ ସାହିତ୍ୟ ସବୁ କ୍ଷେତ୍ରରେ, ସଂକୀର୍ଣ୍ଣ ମନୋଭାବ (extremely norrow groupism) ଦ୍ୱାରା ଏକ ପ୍ରକାର ନୈରାଶ୍ୟଜନକ ପରିସ୍ଥିତି ସୃଷ୍ଟି ହୋଇଛି,

ଯେତେବେଳେ ଭାରତର ସମଗ୍ର ଯୁବ ସମାଜ ଗଭୀର ବିଷାଦବାଦ ଦ୍ୱାରା ଭଗ୍ନ ହୃଦୟ ଓ ଅସହାୟ, ସେତେବେଳେ ଆମର ମହାନ୍ ଐତିହ୍ୟ ଓ ସଂସ୍କୃତିକୁ ସମ୍ୟକ୍ ଭାବରେ ଅଧ୍ୟୟନ କରି ତା' ମଧ୍ୟରୁ ଦୃଢ଼ ଆତ୍ମବିଶ୍ୱାସ ଓ ସୁସ୍ଥ ସାମାଜିକ ଜୀବନ ପାଇଁ ଆଧୁନିକ ମୂଲ୍ୟବୋଧ ସମ୍ବନ୍ଧରେ କିଛି 'ଦିଗ୍ ଦର୍ଶନ'ଲାଭ କରିବା ଏକାନ୍ତ ପ୍ରୟୋଜନ ହୋଇ ପଡ଼ିଛି । କାରଣ ଆମର ସାମାଜିକ ପ୍ରଗତି, ଆମର ଐତିହ୍ୟ ଓ ଆମର ସାଂସ୍କୃତିକ ମୂଲ୍ୟବୋଧ ଉପରେ ପର୍ଯ୍ୟବେଶିତ ହେବା ଉଚିତ୍ । ମହାଭାରତ ଯୁଦ୍ଧରେ ଅର୍ଜୁନ ଯୁଦ୍ଧକ୍ଷେତ୍ରରେ ଠିଆ ହୋଇ ଯେତେବେଳେ ଦେଖିଲେ ସମ୍ମୁଖରେ ତାଙ୍କର ଗୁରୁଜନ ଓ ଅନ୍ୟାନ୍ୟ ପ୍ରିୟଜନମାନେ ଯୁଦ୍ଧରେ ଅବତୀର୍ଣ୍ଣ, ସେତେବେଳେ ସେ ସେମାନଙ୍କୁ ଯୁଦ୍ଧରେ ବଧ କରିବାକୁ ପଶ୍ଚାଦ୍‌ପଦ ହୋଇଥିଲେ ଏବଂ ବିଷାଦଗ୍ରସ୍ତ ହୋଇପଡ଼ିଲେ –ସେତେବେଳେ ଅର୍ଜୁନଙ୍କର ପ୍ରିୟ ସଖା ସ୍ୱୟଂ ଶ୍ରୀକୃଷ୍ଣ ତାଙ୍କର ସେ ବିଷାଦଗ୍ରସ୍ତ ଚିନ୍ତାକୁ ଦୂର କରିପାରିଥିଲେ । ଧରାଭୂମିରୁ ଅସତ୍ୟ, ଅନ୍ୟାୟ, ଅତ୍ୟାଚାରକୁ ଦୂର କରିବାକୁ ହେଲେ "ବିଷାଦବାଦକୁ ପରିତ୍ୟାଗ କରିବାକୁ ହେବ"–କର୍ମଯୋଗୀ ହୋଇ ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ହିଁ ପ୍ରକୃତ ଧର୍ମ ।

ଏହି ବିଂଶ ଶତାବ୍ଦୀରେ ଭାରତୀୟ ସମାଜ, ରାଜନୀତି ଓ ସାହିତ୍ୟରେ ଏକ ବିଷାଦର କଳାଛାୟା ଘେରି ହୋଇ ରହିଛି । ସବୁଆଡ଼େ ଅନ୍ୟାୟ, ଅତ୍ୟାଚାର ଓ ଅସତ୍ୟର ରକ୍ତନଦୀ ବହୁଛି । କିଏ ଆଗେଇ ଆସି କହିବ–"ଏ ଅନ୍ୟାୟକୁ ପ୍ରତିରୋଧକର ଓ ଏ ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ କର । ବୁଭୁକ୍ଷୁ ଓ ବେକାର ଯୁବ ସଂପ୍ରଦାୟ ଗଭୀର ବିଷାଦବାଦରେ ବହୁଧା ବିଭକ୍ତ । ଅନ୍ୟ ଦିଗରେ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ବିଶୃଙ୍ଖଳତା ଏହି ବିଷାଦବାଦକୁ ଦ୍ୱିଗୁଣିତ କରି ରଖିଛି ଏବଂ ଯୁବ ସଂପ୍ରଦାୟକୁ ସମସ୍ତ ପ୍ରକାର ସାମାଜିକ, ରାଜନୈତିକ ଅରାଜକତାର ଶିକାର ହେବାକୁ ପଡୁଛି ।

କୋଟି କୋଟି ଲୋକ ନିରକ୍ଷର, ଭାଗ୍ୟବାଦୀ କୁସଂସ୍କାର ଭିତରେ ଆଛନ୍ନ । ଏହି ପ୍ରକାର ସାଂସ୍କୃତିକ ସଂକଟ ବେଳେ ଆମ ଯୁବ ସଂପ୍ରଦାୟକୁ ହୀନମନ୍ୟତା ଓ ନୈରାଶ୍ୟକୁ ମନରୁ ପୋଛି ଦେଇ ଶକ୍ତି, ଆତ୍ମବିଶ୍ୱାସ ଓ ଦୂରଦୃଷ୍ଟି ଆହରଣ କରିବାକୁ ହେବ । ଆମ ଭାରତୀୟ ସଂସ୍କୃତିର ବୀଜମନ୍ତ୍ରକୁ ବାସ୍ତବ କ୍ଷେତ୍ରରେ ପ୍ରୟୋଗ କରିବାକୁ ହେବ ।

ସଂସ୍କୃତି ହେଉଛି ଏକ ମୂଲ୍ୟବୋଧ, ଯାହା ଜୀବନକୁ ଉନ୍ନତ ଓ ମହୀୟାନ କରେ । ଏହି ମୂଲ୍ୟବୋଧ ସାମାଜିକ ଚାଲିଚଳନ, ସାହିତ୍ୟ, କଳା ଓ ଅର୍ଥନୀତି ସବୁଥିରେ ପ୍ରତିଫଳିତ ହୋଇଥାଏ । ଯାହା ଜୀବନକୁ  ସମାଜକୁ ସୃଜନଶୀଳ କରାଏ, ତାହା ହିଁ ସଂସ୍କୃତି ଏହି ସଂସ୍କୃତିର ଆଲୋକମୟ ମନ୍ଦିରରେ ପ୍ରବେଶ କରିବାକୁ ହେଲେ ଆତ୍ମସଂଯମ, ଆତ୍ମବିଶ୍ୱାସ ଓ ଆତ୍ମ ସମ୍ମାନ ରୂପକ ତିନୋଟି ପାହାଚ ଦେଇ ଗତି କରିବାକୁ ହେବ ।

ତେଣୁ ଭାରତର ଜଣେ ବିଶିଷ୍ଟ ମନୀଷୀ ରାଜଗୋପାଳାଚାରୀ କହିଥିଲେ, Selfrestraint in expression is one of the forms of culture" ଆତ୍ମ ସଂଯମର ଅର୍ଥ ନୁହେଁ, ଅନ୍ୟାୟକୁ ନୀରବରେ ସହ୍ୟ କରିବା ବରଂ ନିଜକୁ ଶକ୍ତିଶାଳୀ କରି ଅନ୍ୟାୟ ବିରୁଦ୍ଧରେ ନିରନ୍ତର ଯୁଦ୍ଧ କରିବାକୁ ହେଲେ ଆତ୍ମସଂଯମୀ ହେବାକୁ ହିଁ ପଡ଼ିବ ।

ଭାରତୀୟ ସଂସ୍କୃତିର ମୂଳତତ୍ତ୍ୱ ବେଦ, ଉପନିଷଦ, ଶ୍ରୀମଦ୍‌ଭଗବତ ଗୀତା, ମହାଭାରତ ଓ ରାମାୟଣରେ ବିଭିନ୍ନ ଶ୍ଳୋକ ଓ ରୂପକ ଗଳ୍ପ ମାଧ୍ୟମରେ ପରିବେଷିତ ହୋଇଛି । ଋକ୍‌ବେଦ ଖ୍ରୀଷ୍ଟପୂର୍ବ ୨୦୦୦ବର୍ଷ ପୂର୍ବେ ସଂସ୍କୃତରେ ଲେଖାଯାଇଥିଲା, ଯାହାର ଚିନ୍ତାଧାରା ମଧ୍ୟରେ ଆଧୁନିକ ସମାଜତତ୍ତ୍ୱ ଓ ସାମାଜିକ ଐକ୍ୟବଦ୍ଧ ଜୀବନର ଦର୍ଶନ ଦେଖିବାକୁ ମିଳେ । ଏହି ଋକ୍‌ବେଦରେ ୧୦ ମ ମଣ୍ଡଳରେ ସାମ୍ୟଭାବ, ସାମାଜିକ ସଂହତି ସମ୍ବନ୍ଧରେ ଅତି ମନୋମୁଗ୍ଧକର ଭାବନା ରହିଛି ଯାହା ଆଜି ଯୁବ ସଂପ୍ରଦାୟର ଚିନ୍ତା ଓ ଚେତନାର ଦିଗନ୍ତକୁ ଆଲୋକିତ କରିପାରିବ ।

**"ସଂଗଚ୍ଛଧ୍ୱଂ ସଂବଦଧ୍ୱ ସଂବୋମନାଂସି ଜାନତାମ୍<br>
ଦେବାଭାଗଂ ଯଥା ପୂର୍ବେ ସଂଜାନନା ଉପାସତେ<br>
ସମାନୋ ମନ୍ତ୍ରଃ ସମିତିଃ ସମାନୀ<br>
ସମାନଂ ମନଃ ସହଚିତ୍ତମେଷାମ୍<br>
ସମାନଂ ମନ୍ତ୍ରଂ ଅଭିମନ୍ତ୍ରୟେ ବଃ<br>
ସମାନେନ ବୋହ ବିଷା ଜୁହୋଭି,<br>
ସମାନୀ ବ ଆକୁତିଃ ସମାନା ହୃଦୟାନି ସମାନଂ ଅସ୍ତୁ,<br>
ବୈ ମନୋ ଯଥା ବଃ ସୁ ସହାସତି ।"**

(ଋ.୧୦ମ-୧୯୧)

ଏହାର ଅର୍ଥ – ଯେପରି ପୁରାତନ କାଳରେ ଦେବତାମାନେ ଏକତ୍ରିତ ହୋଇ ଯଜ୍ଞର ଫଳ ସମସ୍ତେ ଏକତ୍ର ଉପଭୋଗ କରୁଥିଲେ, ସେହିପରି ତୁମ୍ଭେମାନେ ଏକାଠି ହୋଇ ପରସ୍ପର ମଧ୍ୟରେ ଭାବ ବିନିମୟ କର, ମନ ମଧ୍ୟରେ ସଂହତିଭାବ ସୃଷ୍ଟି କର । ହେ ମାନବଗଣ, ତୁମ୍ଭମାନଙ୍କର ବିଚାର ସମାନ ହେଉ । ମନ ସମାନ ହେଉ । ତୁମ ସମସ୍ତଙ୍କୁ ସମାନ ମନ୍ତ୍ର ପ୍ରଦାନ କରୁଛି ସମାନ ଭାବରେ ଭୋଗ୍ୟବସ୍ତୁ ଅର୍ପଣ କରୁଛି ।" ସାମାଜିକ ସଂହତି ଓ ସାମ୍ୟଭାବ କି ସୁନ୍ଦର ଭାବରେ ଏହି ବୈଦିକ ଶ୍ଳୋକରେ ନିହିତ ରହିଛି । ଆଜି ଆମର ଏହି ସାମାଜିକ ଦର୍ଶନରେ ଉଦ୍‌ବୁଦ୍ଧ ହେବାର ବେଳ ଆସିଛି । ଅତୀତରେ ମଧ୍ୟ ସମସ୍ତ ପ୍ରକାର ସାମାଜିକ ବୈଷମ୍ୟ ମଧ୍ୟରେ ସାମାଜିକ ସଂହତି ରକ୍ଷା କରିବାରେ ଆମ ସଂସ୍କୃତି ସକ୍ଷମ ହୋଇ ପାରିଥିଲା ।

ବର୍ତ୍ତମାନ ବିଚାର କରିବା କଥା ଆମ୍ଭେମାନେ ପ୍ରକୃତରେ ଏହି ବୈଦିକ ଆଦର୍ଶ, ସାମାଜିକ ସାମ୍ୟ ଓ ସଂହତିକୁ ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ଆତ୍ମ ସଂଯମ ସହକାରେ ପାଳନ କରିପାରୁଛି କି ? କି ସାମାଜିକ କି ରାଜନୈତିକ କି ଅର୍ଥନୈତିକ ସବୁ କ୍ଷେତ୍ରରେ ଏହି ମୂଲ୍ୟବୋଧକୁ ଉପେକ୍ଷା କରାଯାଉଛି । ଶିକ୍ଷା, ସଂସ୍କୃତି, ରାଜନୀତି ଓ ଅର୍ଥନୀତିକୁ ଯେଉଁମାନେ ନିୟନ୍ତ୍ରଣ କରୁଛନ୍ତି, ସେହି ନିୟନ୍ତ୍ରଣକାରୀ ନେତୃତ୍ୱ ମଧ୍ୟରେ ଆତ୍ମପ୍ରତାରଣା ଓ ଛଳନାର ଦ୍ୱୈତ-ଚରିତ୍ର କାର୍ଯ୍ୟ କରୁଛି । ଫଳରେ ଏହି ମହାନ୍ ସଂସ୍କୃତିରେ ସଂକଟ ଦେଖା ଦେଇଛି । ଏହି ସଂସ୍କୃତିର କୁପରିଣାମ ଆଜି ଆମେ ଅଙ୍ଗେଅଙ୍ଗେ ନିଭାଉଛୁ । ଆଜି ଭାରତୀୟ ସମାଜ ମଧ୍ୟରେ ଉଚ୍ଚଜାତି ଓ ନୀଚଜାତି ମଧ୍ୟରେ ଅର୍ଥନୈତିକ ଓ ସାମାଜିକ ପ୍ରଭେଦ ଦୂର ହୋଇ ପାରୁ ନାହିଁ ଏବଂ ଅର୍ଥନୈତିକ ବୈଷମ୍ୟ କ୍ରମେ ବଢ଼ି ଚାଲିଛି । ଯେଉଁମାନେ ଭାରତୀୟ ସଂସ୍କୃତି ଓ ମୂଲ୍ୟବୋଧକୁ ବିଶ୍ୱାସ କରନ୍ତି ନାହିଁ, ଯେନତେନ ପ୍ରକାରଣେ ବିତ୍ତଶାଳୀ ହୋଇ ବୈଭବପୂର୍ଣ୍ଣ ଜୀବନଯାପନ କରିବା ସେମାନଙ୍କର ଏକମାତ୍ର ଲକ୍ଷ୍ୟ । ଫଳରେ ଆମ ସମାଜ ମଧ୍ୟରେ ଏତେ ସ୍ୱାର୍ଥପରତା, ଏତେ ଦୁର୍ନୀତି ଓ ଏତେ ନିଷ୍ଠୁରତା ପ୍ରକାଶ ପାଉଛି ।

**ସଂସ୍କୃତିର ତ୍ରିବେଣୀଧାରା :**

ବୃହଦାରଣ୍ୟକ ଉପନିଷଦରେ ବର୍ଣ୍ଣିତ ହୋଇଛି ଯେ ଗୁରୁ ପ୍ରଜାପତି ଦେବତା ମନୁଷ୍ୟ ଓ ଦାନବ ଏହି ତିନି ଶ୍ରେଣୀର ଶିଷ୍ୟମାନଙ୍କୁ ତିନୋଟି ଜୀବନଧର୍ମୀ ଉପଦେଶ ଦେଇଥିଲେ ଯଥା : ଦତ୍ତ, ଦମୟତ, ଦୟଧ୍ୱମ୍ । ଦତ୍ତ ଅର୍ଥ (To give) ତୁମ୍ଭେମାନେ ତ୍ୟାଗ କର । ଦମୟତ୍ ଅର୍ଥ (control yourself) ତୁମ୍ଭେମାନେ ସଂଯତ ହୁଅ । ଦୟଧ୍ୱମ୍ ଅର୍ଥ (Be Compassionate) ତୁମ୍ଭେମାନେ ସମ୍ବେଦନଶୀଳ ହୁଅ । ସେଦିନ ଗୁରୁକୁଳ ଆଶ୍ରମରେ ପ୍ରଜାପତି ବଜ୍ର ଗମ୍ଭୀର କଣ୍ଠରେ ଯେଉଁ ଶ୍ଳୋକ ଆବୃତ୍ତି କରି ଏହି ଯେଉଁ ଉପଦେଶ ଦେଇଥିଲେ ତାଙ୍କର ଦେବତା, ମାନବ ଓ ଦାନବ ଶିଷ୍ୟମାନଙ୍କୁ ତାହା ଆଜି ଆମର ଏହି କ୍ଷୟିଷ୍ଣୁ ସମାଜର ବୁଦ୍ଧିଜୀବୀ ମାନବ ଓ ବିତ୍ତଲୋଲୁପ କଳାବଜାରୀ ଦାନବ ରୂପି ମାନବମାନଙ୍କ ପ୍ରତି ପ୍ରଯୁଜ୍ୟ ।

ତଦେତତ୍ ଦୈଷୋ –ଦୈବୀ ବାଗନୁବଦତି
ସ୍ତନୟିତ୍ନୁର୍ଦ ଦ, ଦ, ଇତି
ଦାମ୍ୟର ଦତ୍ତ, ଦଧ୍ୱମିତି
ତଦେତତ୍ରୟ,
ଶିକ୍ଷେଦ୍ୟମୈଦାନଂ, ଦୟାମିତି ।

ଏହି ପ୍ରକାର ଦୈବବାଣୀ, ବଜ୍ର ଶବ୍ଦ ପରି ବାରମ୍ବାର ନିନାଦିତ ହୁଏ ନିଜକୁ ସଂଯତ କର, ଅନ୍ୟକୁ ଦାନ କର, ସବୁପ୍ରାଣୀ ପ୍ରତି ସମ୍ବେଦନଶୀଳ ହୁଅ : ତେଣୁ ପ୍ରତ୍ୟେକ ବ୍ୟକ୍ତି ଆତ୍ମ ସଂଯମ, ତ୍ୟାଗ, କରୁଣା ଏହି ତିନୋଟି ମୂଲ୍ୟବୋଧର ଅନୁଶୀଳନ କରିବା ଉଚିତ୍ । ଶ୍ରୀମଦ୍ ଭଗବତ ଗୀତାରେ ମଧ ଦ୍ୱାଦଶ ଅଧ୍ୟାୟର ୧୩ ଶ୍ଳୋକର ସାଂସ୍କୃତିକ ମୂଲ୍ୟବୋଧ 'ମୈତ୍ରୀ ଓ କରୁଣା'' ସମ୍ପର୍କରେ ଏକ ଜୀବନଧର୍ମୀ ଆଦର୍ଶ ଶ୍ଳୋକ ଆମର ମନେ ରଖିବା ଉଚିତ୍ ।

**ଅଦ୍ୱେଷ୍ଟମ୍ ସର୍ବଭୂତାନା–ମୈତ୍ରଃ କରୁଣ ଏବ ଚ**
**ନିର୍ମମୋ ନିରହଙ୍କାରଃ ସମଦୁଃଖ ସୁଖଃ କ୍ଷମା ।** [୧]

## ସମଦର୍ଶନ ଓ ସଂଯମର ଆଦର୍ଶ :

ସେହିପରି 'ସମଦର୍ଶନର ଚିନ୍ତାଧାରା' ଗୀତାର ଷଷ୍ଠ ଅଧ୍ୟାୟନରେ ୨୯ ଶ୍ଳୋକରେ ବର୍ଣ୍ଣିତ ହୋଇଅଛି । ଆଧୁନିକ ସମାଜ ସଂଗଠନ ଓ ରାଜନୀତି କ୍ଷେତ୍ରରେ ସମଦର୍ଶନର ଚିନ୍ତାଧାରାକୁ ଗ୍ରହଣ କରି ଅନୁଶୀଳନ କରିବା ଉଚିତ୍ ।

**ସର୍ବଭୂତସ୍ଥମାତ୍ମାନଂ ସର୍ବଭୂତାନିଚାତ୍ମନି**
**ଇକ୍ଷତେ ଯୋଗଯୁକ୍ତାତ୍ମା ସର୍ବତ୍ର ସମଦର୍ଶନଃ ।**

ଆତ୍ମ-ସଂଯମ ସମ୍ପର୍କରେ ଶ୍ରୀମଦ୍ ଭଗବତ ଗୀତା ତୃତୀୟ ଅଧ୍ୟାୟ -୪୩ ଶ୍ଳୋକରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଉପଦେଶ ଦେଇ କହିଛନ୍ତି -

**ଇନ୍ଦ୍ରିୟାଣି ପରେଣ୍ୟାହୁରିନ୍ଦ୍ରିୟେଭ୍ୟଃ ପରଂ ମନଃ**
**ମନସନ୍ତୁ ପରା ବୁଦ୍ଧି ର୍ଯୌ ବୁଦ୍ଧେଃ ପରତନ୍ତସଃ ।**
**ଏବଂ ବୁଦ୍ଧେଃ ପରଂ ବୁଦ୍ଧ୍ୟା ସଂସ୍ତୁଭ୍ୟାତ୍ମାନମାତ୍ମନା**
**ଜହି ଶତ୍ରୁ, ମହାବାହୋ, କାମରୂପଂ ଦୁରାସଦଂ ।**

ଆଜି ଭାରତୀୟ ସମାଜ ଓ ସଂସ୍କୃତିର ଗଭୀର ସଙ୍କଟ ବେଳେ ଉପରୋକ୍ତ ସାମାଜିକ ମୂଲ୍ୟବୋଧକୁ ନିଜ ଜୀବନ, ପରିବାର, ସମାଜ ଓ ରାଜନୀତି କ୍ଷେତ୍ରରେ ଅତି ନିଷ୍ଠାପର ଭାବରେ ଅନୁଶୀଳନ ନକଲେ ସମାଜରେ ଅଶାନ୍ତି, ଅନ୍ୟାୟ, ଅତ୍ୟାଚାର, ଆତ୍ମ-ପ୍ରତାରଣା, ଛଳନା ଓ ଅହମିକା କ୍ରମେ କ୍ରମେ ସର୍ବତ୍ର ବ୍ୟାପିଯିବ । ହିଂସା ଓ ପ୍ରତିହିଂସାର ନିଆଁରେ ସମସ୍ତେ ଆମେ ଜଳିଯିବା । ଏବେ ମଧ ଆମେ ବିହାରର ବେଲଚି, ଉତ୍ତର ପ୍ରଦେଶରର ଆଲିଗଡ, ମୋରାଦାବାଦ, ତ୍ରିପୁରାର ଅଗରତଲା, ଏବଂ ଭାରତର ବିଭିନ୍ନ ପ୍ରଦେଶରେ ଉଣା ଅଧିକେ ସାମ୍ପ୍ରଦାୟିକ ବିଦ୍ୱେଷ ଭାବ, ଜାତି ଓ ଉପଜାତି ମଧ୍ୟରେ ହିଂସା ଏବଂ ସାମାଜିକ ଅସଙ୍ଗତିର ବିଭତ୍ସ ରୂପ ଦେଖିବାକୁ ମିଳୁଛି । ଏହି

ହିଂସା ଓ ବିଦ୍ୱେଷକୁ ଦୂର କରି ଭାରତୀୟ ସମାଜକୁ ଶାନ୍ତି, ମୈତ୍ରୀ, କରୁଣାର ମୂଲ୍ୟବୋଧ ଉପରେ ପୁନଃର୍ଗଠିତ ନକଲେ ଆମେ ଭାରତୀୟ ଏକ ମହାନ୍ ସଂସ୍କୃତିର ଦାୟାଦ ବୋଲି ବିଶ୍ୱ ଦରବାରରେ ପରିଚୟ ଦେବାର ଆତ୍ମ-ଅଧିକାରରୁ ବଞ୍ଚିତ ହେବୁ । ତେଣୁ ପ୍ରତ୍ୟେକ ଭାରତୀୟ ଏକ ମହାନ୍ ସଂସ୍କୃତିର ଉତ୍ତର ଦାୟାଦ ହିସାବରେ ଆଦର୍ଶ ସମାଜ ସଂଗଠନରେ ବ୍ରତୀ ହେବା ଉଚିତ୍ । ଆମେ ଏକ ମହାନ୍ ସଂସ୍କୃତିର ଉତ୍ତରାଧିକାରୀ ''ଏହି ଆତ୍ମ-ବିଶ୍ୱାସ'' ଆମ ମନରେ ସଞ୍ଚାର କରିବାକୁ ହେବ । ଆମେ ଯେତେ ଏହି ଆତ୍ମ-ବିଶ୍ୱାସରେ ଦୃଢ଼ ରହିବୁ ଏବଂ ଭାରତୀୟ ପରମ୍ପରା ଓ ସାଂସ୍କୃତିକ ମୂଲ୍ୟବୋଧକୁ ଭିତ୍ତିଭୂମି କରି ଆମ ସମାଜ ଓ ରାଜନୀତିକୁ ପୁନଃର୍ଗଠନ କରିବାକୁ ଆଗେଇ ଆସିବୁ, ଆମେ ସେତେ ଆମ ଜୀବନ, ସମାଜ ପକ୍ଷରେ ମଙ୍ଗଳକର ଓ ଶୁଭଙ୍କର ପରିବେଶ ସୃଷ୍ଟି କରିପାରିବୁ । ପରମ୍ପରା ଓ ଆଧୁନିକତା ଏହି ଦୁଇଟିର ସମନ୍ୱୟରେ ଭାରତୀୟ ସମାଜ ପୁନର୍ଗଠିତ ହୋଇ ବିଶ୍ୱରେ ଏକ ଆଦର୍ଶ ଦେଶ ରୂପେ ସମ୍ମାନିତ ହେବ ଏହି ଆତ୍ମ-ବିଶ୍ୱାସ ଆମ ମନରେ ସୃଷ୍ଟି କରୁ ନୂତନ ପ୍ରେରଣା ଓ ଉଦ୍ଦୀପନା । ଏହା ହିଁ ଆମର ସମସ୍ତଙ୍କର କାମ୍ୟ ।



୧. ଶ୍ରୀମଦ୍ ଭଗବଦ୍ ଗୀତା ୧୨ ଅଧ୍ୟାୟ ଶ୍ଲୋକ ୧୩
୨. ଶ୍ରୀମଦ୍ ଭଗବଦ୍ ଗୀତା ଷଷ୍ଠ ଅଧ୍ୟାୟ, ଶ୍ଲୋକ ୨୯
୩. ଶ୍ରୀମଦ୍ ଭଗବଦ୍ ଗୀତା ତୃତୀୟ ଅଧ୍ୟାୟ ୪୨-୪୩

# ସଂସ୍କୃତି ଓ ଅପସଂସ୍କୃତି : ଏକ ଅଭିଭାଷଣ

The weight of this sad time we must obey, speak what we feel, not what we ought to say. The oldest hath borne most. we think our young shall never see so much nor live so long.

ସବୁ ଅଭିଭାଷଣ ଓ ସବୁ ସାହିତ୍ୟିକ ଅଧିବେଶନରେ ଦଳେ ସ୍ତାବକ ଭାବରେ ଶୁଣନ୍ତି ଏବଂ ଅନ୍ୟ ଜଣେ ମାନ୍ୟଗଣ୍ୟ ବ୍ୟକ୍ତି କିଛି ନୀତିବାକ୍ୟ ଓ ଉପଦେଶମାନ ମୁଷଳଧାରାରେ ବର୍ଷାପରି ଢାଳି ଯାଆନ୍ତି । ବକ୍ତବ୍ୟରେ ଚିନ୍ତାଧାରାର ଭାରସାମ୍ୟ ଥାଉ ବା ନ ଥାଉ- ସେ ଦିଗରେ ଭୃକ୍ଷେପ କରନ୍ତି ନାହିଁ । ତେଣୁ ଆଜି ଏହି ଛାତ୍ର ସମାବେଶରେ ମୁଁ କିଛି ନୀତିବାଣୀ ଶୁଣାଇବାକୁ ଆସିନାହିଁ । ମୁଁ ଆସିଛି ଛାତ୍ର ସମାଜ ମଧ୍ୟରେ ନିଜକୁ ଏକାନ୍ତ ଭାବରେ ହଜାଇ ଦେବା ପାଇଁ – ନିଜର ଚିନ୍ତାଧାରା ଓ ଛାତ୍ର ସମାଜର ଚିନ୍ତାଧାରା ମଧ୍ୟରେ କିଛି ସାମଞ୍ଜସ୍ୟ ଖୋଜିବା ପାଇଁ ।

ବନ୍ଧୁଗଣ, ଭାରତୀୟ ସଂସ୍କୃତିର ଅବକ୍ଷୟର ଧାରା ଓ ଅପସଂସ୍କୃତିର କାଳଗ୍ରାସୀ ରୂପକୁ ଜାଣିବା ପୂର୍ବରୁ ଆମକୁ ପ୍ରଥମେ ଜାଣିବାକୁ ହେବ ଆମ ସଂସ୍କୃତିର ସ୍ୱରୂପ କ'ଣ ? ଏହି ସଂସ୍କୃତି ସମ୍ବନ୍ଧରେ ଆମର ସମ୍ୟକ୍ ଜ୍ଞାନ ରହିଛି କି ? ପ୍ରଥମେ ଆଲୋଚନା କରାଯାଉ ଆମ ସଂସ୍କୃତିର ତାତ୍ପର୍ଯ୍ୟ କ'ଣ ?

### ସଂସ୍କୃତିର ସଂଜ୍ଞା :

ସଂସ୍କୃତି କହିଲେ ଆମେ ବୁଝୁ ଜୀବନକୁ ଉନ୍ନତ, ସୁନ୍ଦର ଓ ସୁଖମୟ କରିବାକୁ ଜୀବନର କେତେଗୁଡ଼ିଏ ମୂଲ୍ୟବୋଧର ଉତ୍କର୍ଷ ସାଧନ । ଜୀବନ, ସମାଜ ଓ ଦେଶର ପ୍ରଗତି ଓତଃପ୍ରୋତ ଭାବରେ ଜଡ଼ିତ । ଜୀବନର ପ୍ରଗତି ଉପରେ ସମାଜର ପ୍ରଗତି ଓ ସମାଜର ପ୍ରଗତି ଉପରେ ଦେଶର ପ୍ରଗତି ନିର୍ଭର କରେ । ଯେଉଁ ମୂଲ୍ୟବୋଧ ଏହି ସମାଜ ପ୍ରଗତିର ରଥଚକ୍ରକୁ ଆଗେଇ ନେଇପାରେ ତାହା ହିଁ ସଂସ୍କୃତି ବୋଲି ମୁଁ ମନେ କରେ ।

ସଂସ୍କୃତିର ବ୍ୟାକରଣଗତ ଅର୍ଥ ହେଉଛି ସମ୍ୟକ ରୂପେ କର୍ଷଣ କରିବା । ଜୀବନରେ ଓ ସମାଜରେ ଅସତ୍ୟ, ଅନ୍ୟାୟ ଓ ଅତ୍ୟାଚାରକୁ ଲୋପ କରି ସତ୍ୟ, ନ୍ୟାୟ, ପ୍ରେମ ପ୍ରତିଷ୍ଠା କରିବାର ସାଧନାକୁ ହିଁ ସଂସ୍କୃତି କୁହାଯାଏ । ଭାରତର ଜଣେ ମନୀଷୀ କହିଥିଲେ –

"Culture is not character of morality. Character is the inside of man Culture is external rather than internal. Culture has more to do with behaviour and way of living than with character."

**ଭାରତୀୟ ସଂସ୍କୃତିର ସ୍ୱରୂପ :**

ଭାରତୀୟ ସଂସ୍କୃତିର ମହନୀୟତା ସମ୍ବନ୍ଧରେ ପୃଥିବୀର ବଡ଼ ବଡ଼ ଚିନ୍ତାନାୟକ ଓ ମନୀଷୀଗଣ ବହୁ ଗୁଣ ଗାନ କରିଯାଇଛନ୍ତି । ଜର୍ମାନୀର ମ୍ୟାକସ୍ ମୁଲାର୍, ଫ୍ରାନ୍ସର Romain Rolland ଏବଂ ଆମେରିକାର Aldous Huxley ପ୍ରଭୃତି ମନୀଷୀଗଣ ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ ସମ୍ବନ୍ଧରେ ଅନେକ ପୁସ୍ତକ ଲେଖି ଯାଇଛନ୍ତି । ସାମ୍ୟ, ମୈତ୍ରୀ, ବିଶ୍ୱଭ୍ରାତୃତ୍ୱ, ଉଦାରତା ଓ ସର୍ବଧର୍ମ ସମନ୍ୱୟ ଏହି ପାଞ୍ଚୋଟି ଆଧାର ଉପରେ ହିଁ ଭାରତୀୟ ସଂସ୍କୃତିର-ମୂଳଭିତ୍ତି ପର୍ଯ୍ୟାବସିତ । ଋକ୍‌ବେଦ, ଉପନିଷଦ ଓ ଶ୍ରୀମଦ୍ ଭଗବଦ୍ ଗୀତାରେ ଥିବା ସାମ୍ୟ ଦର୍ଶନର ଚିନ୍ତାନଧାରାରେ ଭାରତୀୟମାନେ ଉଦ୍‌ବୁଦ୍ଧ ହୋଇ ଆଦର୍ଶ ଜୀବନ ଯାପନ କରନ୍ତୁ – ଏହା ହିଁ ଆମ ମନୀଷୀମାନଙ୍କର ସ୍ୱପ୍ନ ଓ ଆଦର୍ଶ ଥିଲା ।

**ଆତ୍ମୌପମ୍ୟେନ ସର୍ବତ୍ର ସମଂ ପଶ୍ୟତି ଯୋଽର୍ଜୁନ**
**ସୁଖଂ ବା ଯଦି ବା ଦୁଃଖଂ, ସ ଯୋଗୀ ପରମୋ ମତଃ ।**

ଏହି ମାନବବାଦୀ ଦର୍ଶନ ଗୀତାର ଷଷ୍ଠ ଅଧ୍ୟାୟର ୩୨ଶ୍ଳୋକରେ ଲିପିବଦ୍ଧ ରହିଛି । ନିଜର ଆତ୍ମା ପରି ସମାଜର ସବୁ ପ୍ରାଣୀକୁ ଭଲ ପାଇବା ଉଚିତ୍ । ସୁଖ ବା ଦୁଃଖରେ ବିଚଳିତ ନ ହୋଇ ଯେ ସମସ୍ତଙ୍କୁ ନିଜ ଆତ୍ମା ପରି ଭାବି ଆଦର୍ଶ ସାମାଜିକ ଜୀବନଯାପନ କରେ ସେ ପ୍ରକୃତରେ ସଂସ୍କୃତି ସମ୍ପନ୍ନ ବୋଲି ପରିଗଣିତ ହୁଏ । ବୈଦିକ ସଂସ୍କୃତିର ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ଆଦର୍ଶ ସାମାଜିକ ସଂହତିପୂର୍ଣ୍ଣ ଜୀବନଯାପନ କରିବାର ସ୍ୱପ୍ନ ଆଜି ବିଫଳ ହୋଇଛି । ଆଜି ଭାରତୀୟ ସଂସ୍କୃତି ଅବକ୍ଷୟ ପଥରେ ଗତି କରି ଚାଲିଛି । ତେଣୁ ବନ୍ଧୁଗଣ ଆଜି ଆମେ ଆତ୍ମସମୀକ୍ଷା କରିବା – ଆମ ସଂସ୍କୃତି ଏତେ ମହୀୟାନ ଏତେ ଉନ୍ନତ ହୋଇ ମଧ୍ୟ ଆମେ କାହିଁକି ସେ ଉନ୍ନତ ସଂସ୍କୃତିର ଯଥାର୍ଥ ଉତ୍ତରାଧିକାରୀ ହୋଇପାରିନାହୁଁ ?

**ସଂସ୍କୃତିର ଅବକ୍ଷୟର ଧାରା –**

ଭାରତୀୟ ସଂସ୍କୃତିର ଅବକ୍ଷୟର ଅନେକ ଗୁଡ଼ିଏ କାରଣ ରହିଛି । ଭାରତରେ ରାଜ୍ୟ ଶାସନର ସୁବର୍ଣ୍ଣଯୁଗ-ଗୁପ୍ତ ଯୁଗର ପତନ ପରେ ଭାରତୀୟ ସଂସ୍କୃତିର ଅବକ୍ଷୟର ଧାରା ଧୀରେଧୀରେ ପରିଲକ୍ଷିତ ହେଲା । ଭାରତର ଶ୍ରେଷ୍ଠ ଦର୍ଶନିକ ଶଙ୍କରାଚାର୍ଯ୍ୟ ନିଜର ଅଦ୍ୱୈତବାଦ ଦ୍ୱାରା ଏହି ଭାରତୀୟ ଧର୍ମ ଓ ସଂସ୍କୃତିକୁ ଜୀବନ୍ୟାସ ଦେଲେ । ବାରମ୍ବାର ଆକ୍ରମଣ ଓ ଶେଷରେ ମୋଗଲ ସାମ୍ରାଜ୍ୟର ବିସ୍ତାର ଫଳରେ ସଂସ୍କୃତିର ସ୍ରୋତସ୍ୱିନୀ ଦୂଷିତ ଓ ପଙ୍କିଳ ହେବାକୁ ଆରମ୍ଭ କଲା ଏବଂ ଦୁଇ ଶହ ବର୍ଷର ଇଂରେଜ ଶାସନ ଫଳରେ ଭାରତର ଏକ ମିଶ୍ର ସଂସ୍କୃତି ଦେଶରେ ସୃଷ୍ଟି ହେଲା । ଯୁକ୍ତି କରାଯାଇପାରେ ଯେ, ବିଜାତୀୟ ସଂସ୍କୃତିର ବୈଶିଷ୍ଟ୍ୟ ଓ ସାରମର୍ମକୁ ନିଜ ଧର୍ମ ମଧ୍ୟରେ ଉଦାର ଚିତ୍ତରେ ଗ୍ରହଣ କରିଛି ଏବଂ ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ଅନ୍ୟ ଧର୍ମ ପ୍ରତି ଉଦାର ଭାବ ଦର୍ଶାଇଅଛି । ତଥାପି ଇତିହାସର କ୍ରୁର ଚକ୍ରରେ ବହୁ ବିଦେଶୀ ଶାସକଙ୍କର କୁଟନୀତି ଓ ଧର୍ମାନ୍ଧତା ଫଳରେ ଭାରତୀୟମାନେ ନିଜ ସଂସ୍କୃତି ବିଷୟରେ ଅନଭିଜ୍ଞ ଓ ଉଦାସୀନ ହୋଇ ଉଠିଲେ । ଶହ ଶହ ବର୍ଷଧରି ରାଜନୈତିକ ଚିନ୍ତା ପରାଧୀନତା ଭାରତୀୟ ସଂସ୍କୃତିର ଅବକ୍ଷୟର ଏକ ମୂଳକାରଣ । ଦ୍ୱିତୀୟରେ ଦୀର୍ଘଦିନର ରାଜନୈତିକ ପରାଧୀନତା ସହ ଅର୍ଥନୈତିକ ଅଧୋଗତି ଭାରତୀୟଙ୍କୁ ଦୁଃଖ, ଦାରିଦ୍ର୍ୟରେ ଜର୍ଜରିତ କରି ପକାଇଲା । ଜନସଂଖ୍ୟା ବୃଦ୍ଧି ଅର୍ଥନୈତିକ ପ୍ରଗତି ପଥରେ ଆଉ ଏକ ପ୍ରତିବନ୍ଧକ ସୃଷ୍ଟି କଲା । ଯେଉଁ ଦେଶର ଲକ୍ଷଲକ୍ଷ ଲୋକ ଅର୍ଦ୍ଧଭୁକ୍ତ ଜୀବନଯାପନ କରନ୍ତି, ଯେଉଁ ଦେଶରେ ଶିଶୁମାନେ ଖାଦ୍ୟ ଓ ଯତ୍ନ ଅଭାବରେ ଅକାଳରେ ଝଡ଼ି ପଡ଼ନ୍ତି, ସେ ଦେଶରେ ନାଗରିକମାନେ, ସେ ଦେଶର ଛାତ୍ରମାନେ ସଂସ୍କୃତି ବିଷୟରେ ଅନଭିଜ୍ଞ ହେବା କିଛି ବିଚିତ୍ର କଥା ନୁହେଁ । ତୃତୀୟରେ ଆମର ସଂସ୍କୃତି ପଣ୍ଡିତମାନେ ଓ ପୁରାଣକାରମାନେ ଆମ ସଂସ୍କୃତିକୁ ନିଜ ସ୍ୱାର୍ଥ, ସାମାଜିକ ସ୍ଥିତି ସମ୍ମାନ ପାଇଁ କଦର୍ଥ କରି ଏ ସମାଜର ଜାତିପ୍ରଥା, ଧର୍ମାନ୍ଧତା, ନରବଳି ପ୍ରଥା, ସତୀଦାହ ପ୍ରଥା ପ୍ରଭୃତି କୁସଂସ୍କାରମାନ ପ୍ରଚାର ଓ ପ୍ରସାର କରି ଆସିଛନ୍ତି । କୁସଂସ୍କାର ଓ କୁଶିକ୍ଷାରେ ଅନ୍ଧୀଭୂତ ହୋଇ ଭାରତୀୟ ନାଗରିକମାନେ ଆଜି ବୃହତ୍ତର ମାନବିକ ଚେତନା ଓ ଦୃଷ୍ଟିଭଙ୍ଗିରୁ ବଞ୍ଚିତ ହୋଇଛନ୍ତି । ଚତୁର୍ଥରେ ଆତ୍ମବିଶ୍ୱାସର ଅଭାବ ଆମ ସାମାଜିକ ଓ ରାଜନୈତିକ ଜୀବନର ଏକ ବ୍ୟାଧି ହୋଇ ପଡ଼ିଛି । ଫଳରେ ସାମାଜିକ ଓ ଅର୍ଥନୈତିକ ପ୍ରଗତି ପାଇଁ ଗଭୀର ଆତ୍ମବିଶ୍ୱାସ ଓ ଦୃଢ଼ତାର ସହିତ ପୃଥିବୀର ଅନ୍ୟ ଜାତିର ପ୍ରଗତି ସହ ତାଳ ଦେଇ ଆମେ ଆଗେଇ ପାରୁନୁ । ସର୍ବୋପରି ଆମର ହୀନମନ୍ୟତା ଓ ଦୁଃସାହସିକ ଦେଶପ୍ରେମର

ଅଭାବ ହିଁ ଆମର ସାଂସ୍କୃତିକ ଅବକ୍ଷୟର ଅନ୍ୟ ଏକ ମୁଖ୍ୟ କାରଣ ରୂପେ ଦେଖା ଦେଇଛି । ଏହି କାଳଗ୍ରାସୀ ଅବକ୍ଷୟର ପ୍ରଭାବ ଭାରତୀୟ ସାହିତ୍ୟ, ଚଳଚ୍ଚିତ୍ର, ସାମାଜିକ ଓ ରାଜନୈତିକ ଜୀବନକୁ କଳୁଷିତ କରୁଛି ।

**ଅପସଂସ୍କୃତିର କରାଳଛାୟା :**

ଯେଉଁ ଅବକ୍ଷୟର ଧାରା ଆମ ସମାଜ ଓ ସଂସ୍କୃତିର ମୂଳଭିତ୍ତିକୁ ଦୋହଲାଇ ଦେଇ ଆମର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଜୀବନକୁ ପଙ୍ଗୁ କରି ପକାଇଛି, ମୁଁ ତାହାକୁ ହିଁ ଅପସଂସ୍କୃତି (Decadent culture) ଆଖ୍ୟା ଦେଉଛି । ଏହି ଅପସଂସ୍କୃତି କିପରି ଆମ ଜୀବନର ସବୁ କ୍ଷେତ୍ରକୁ କବଳିତ କରି ରଖିଛି, ତାହା ଆମ ଛାତ୍ର ସମାଜ ଜାଣି ରଖିବା ଉଚିତ୍ । କାରଣ ସେମାନେ ହିଁ ଦେଶର ଭବିଷ୍ୟତ । ପ୍ରଥମେ ଦେଖାଯାଉ, ଆମ ସାହିତ୍ୟ, ଚଳଚ୍ଚିତ୍ର ଓ ନାଟକ କଥା । ଊନବିଂଶ ଶତାବ୍ଦୀର ୟୁରୋପର ସ୍ଥିତିବାଦ ଦର୍ଶନର ଉଦ୍ଭଟତା (Absurdity)ର ଚିନ୍ତାଧାରା ଆମ ଗଳ୍ପ ଓ କବିତା ଓ ନାଟକର କଳାତ୍ମକ ଚିନ୍ତାଧାରାକୁ ନଷ୍ଟ କରୁଛି । ଏହି ସାହିତ୍ୟ ଲୋକମାନଙ୍କର ମନୋରଞ୍ଜନ କରିବା ଦୂରେ ଥାଉ ବରଂ ସାମାଜିକ ଚିନ୍ତା ଚେତନାକୁ କଳୁଷିତ କରି ପକାଉଛି । ସେହିପରି ଚଳଚ୍ଚିତ୍ରଗୁଡ଼ିକର ପ୍ରଯୋଜକମାନେ ହଲିଉଡ୍ ଚଳଚ୍ଚିତ୍ରକୁ (Hollywood film) ଅନ୍ଧ ଅନୁକରଣ କରି ଚାଲିଛନ୍ତି । କାମୁକତା ଓ ହିଂସା (Sex and Vilence) ଏ ଦୁଇଟି ଆମର ଅଧିକାଂଶ ହିନ୍ଦୀ, ତେଲଗୁ ପ୍ରଭୃତି ଚଳଚ୍ଚିତ୍ରର ମୁଖ୍ୟ ଉପଜୀବ୍ୟ ହୋଇଉଠିଛି । ଆଧୁନିକତାର ନାମରେ ନଗ୍ନତାର ମୁଖା ପିନ୍ଧି ଆମର ଅର୍ଥଲୋଭୀ ପ୍ରଯୋଜକମାନେ ଆମର ଚଳଚ୍ଚିତ୍ରଗୁଡ଼ିକୁ କୁପଥରେ ପରିଚାଳିତ କରୁଛନ୍ତି । ଏହାର ପରିଣାମ ଭୟଙ୍କର ହୋଇ ଉଠିଲାଣି । ଚଳଚ୍ଚିତ୍ରରେ ପ୍ରଦର୍ଶିତ Violent scene ଦେଖି ଚପଳମତି କିଶୋରମାନେ Juvenile delinquent ହୋଇ ଯାଉଛନ୍ତି । ଏହି ପ୍ରକାର ମର୍ମନ୍ତୁଦ ଦୃଶ୍ୟମାନ ଆମ ସମାଜରେ ଦେଖିବାକୁ ମିଳୁଛି । ଅଣ-ବୁଦ୍ଧିଜୀବୀ ଚିନ୍ତାଧାରା (Anti-intellectualism) ଆମର ଶିକ୍ଷିତ ସମ୍ପ୍ରଦାୟର ଚିନ୍ତାଧାରାକୁ ମଧ୍ୟ ପଙ୍ଗୁକରି ପକାଇଛି । ସବୁଠି ଶଠତା (Hypocrisy)ର ଏକ ତାଣ୍ଡବଲୀଳା ଚାଲିଛି । କ୍ଲାସରୁମ୍‌ର ଅଭିଭାଷଣରେ କୁହାଯାଇଛି ଜାତିପ୍ରଥା, ଯୌତୁକ ପ୍ରଥା, ବାଲ୍ୟବିବାହ ଓ ସାମ୍ପ୍ରଦାୟିକତା ସବୁ ସମାଜରୁ ଦୂର ହେବା ଉଚିତ୍ । ଯେଉଁମାନେ ଏହା ମୁହଁରେ କହୁଛନ୍ତି, ସେମାନେ କାର୍ଯ୍ୟରେ ଉପରୋକ୍ତ ସାମାଜିକ ବ୍ୟାଧି ଦୂର କରିବା ପାଇଁ ସକ୍ରିୟ ଚେଷ୍ଟା କରୁନାହାନ୍ତି । ଉଗ୍ର ଜାତିପ୍ରଥାର ବିଷୟରେ ଜର୍ଜରିତ ହୋଇ ଦଳେ ସବର୍ଣ୍ଣ ଲୋକ ଦଳେ ଅବସର୍ଣ୍ଣ ଲୋକଙ୍କୁ ଜୀଅନ୍ତା ପୋଡ଼ି ଦେଉଛନ୍ତି । ଆଲିଗଡ଼ରେ ହିନ୍ଦୁ ମୁସଲମାନ ମଧ୍ୟରେ ହିଂସାର

ତାଣ୍ଡବଲୀଳା ଦେଖି ସମସ୍ତେ ସ୍ତମ୍ଭିତ ହୋଇଗଲେ । ଏହି ସବୁ ଦୃଶ୍ୟ ଅପସଂସ୍କୃତିର ପରିଣତି ।

**ସେହିପରି ଶିକ୍ଷା କ୍ଷେତ୍ରରେ ଦେଖନ୍ତୁ –**

ଏ ଦେଶରେ ଏକ ବଳିଷ୍ଠ ଜାତୀୟ ଶିକ୍ଷାନୀତି ଆଜି ସୁଦ୍ଧା ପ୍ରବର୍ତ୍ତିତ ହୋଇପାରିଲା ନାହିଁ । ଯଦିଓ ସମ୍ବିଧାନର ମୁଖବନ୍ଧରେ (Preamble) ପ୍ରାଥମିକ ଶିକ୍ଷାକୁ ବାଧ୍ୟତାମୂଳକ ଭାବରେ ସାରା ଦେଶରେ ପ୍ରଚାର କରିବା ପାଇଁ ସମ୍ବିଧାନର ଆଦର୍ଶ ରୂପେ ଗ୍ରହଣ କରାଯାଇଛି । କାର୍ଯ୍ୟତଃ ତାକୁ କାର୍ଯ୍ୟରେ ପରିଣତ କରିବାର ଯୋଜନା ଓ ପ୍ରଚେଷ୍ଟା ନାହିଁ । ମାତୃଭାଷାକୁ ଶିକ୍ଷାର ଓ ଶାସନର ମାଧ୍ୟମ ହିସାବରେ ଗ୍ରହଣ କରିବା ପାଇଁ ନୀତିଗତ ଭାବେ ଗ୍ରହଣ କରାଯାଇଛି । କିନ୍ତୁ କାର୍ଯ୍ୟରେ ପରିଣତ କରିବାର ଆନ୍ତରିକତା ଓ ଆଗ୍ରହ ନାହିଁ । ଭାରତୀୟ ସଂସ୍କୃତି ଓ ଐତିହ୍ୟ ବିଷୟରେ ଛାତ୍ରମାନେ ସଚେତନ ହୁଅନ୍ତୁ ବୋଲି ଶିକ୍ଷାବିତ୍‌ମାନେ କହୁଛନ୍ତି କିନ୍ତୁ ବିଶ୍ୱବିଦ୍ୟାଳୟ ଶିକ୍ଷାରେ ଏ ବିଷୟଗୁଡ଼ିକ ସିଲାବସ୍‌ରେ ମଧ୍ୟ ରଖାଯାଇନାହିଁ । ସେହିପରି ଅର୍ଥନୈତିକ ଯୋଜନାଗୁଡ଼ିକ ମଧ୍ୟ ଉଦ୍ଦେଶ୍ୟ ବିହୀନ ଭାବେ କାର୍ଯ୍ୟକାରୀ କରିବା ପାଇଁ ପ୍ରବର୍ତ୍ତନ କରାଯାଇଛି । ସ୍ୱାଧୀନତାର ଦୀର୍ଘ ୩୦ ବର୍ଷ ମଧ୍ୟରେ ଆମର ଅର୍ଥନୈତିକ ପ୍ରଗତିର ହାର ପୃଥିବୀର ଅନ୍ୟ ଦେଶର ପ୍ରଗତିର ହାର ତୁଳନାରେ ଅନେକ କମ୍ । ଆମର ମିଶ୍ର ଅର୍ଥନୀତି (Mixed economy) ଦେଶରେ ଅର୍ଥନୈତିକ ସାମ୍ୟ ଆଣିବା ପରିବର୍ତ୍ତେ ବୈଷମ୍ୟ ବଢ଼ାଇ ଚାଲିଛି । ଏକ ରିପୋର୍ଟରେ ପ୍ରକାଶ ପାଇଛି ଯେ, ସାରା ଭାରତରେ ଟାଟା ଓ ବିରଳାଙ୍କ ଭଳି ପୁଞ୍ଜିପତିଙ୍କ ଆୟ ବର୍ଷକୁ ୧୦୦କୋଟି କରି ବଢ଼ି ଚାଲିଛି । ବାସ୍ତବରେ ଏହି ପୁଞ୍ଜିପତିମାନେ ହିଁ ଏ ଦେଶର ଅର୍ଥନୀତି ନିୟନ୍ତ୍ରଣ କରି ଚାଲିଛନ୍ତି । ଏକ ସାମ୍ୟବାଦୀ ସମାଜ ଗଠନ ଆଜି ସ୍ୱପ୍ନରେ ପରିଣତ ହୋଇଛି । ଏହାର କାରଣ ଆମର ତଥାକଥିତ ଯୋଜନା ବିଶେଷଜ୍ଞ ଓ ନୀତିନିୟାମକ ମାନେ ଦ୍ୱୈତ-ଚରିତ୍ର ଓ ଦ୍ୱୈତ-ଚିନ୍ତାଧାରାର ଶିକାର ହୋଇ ପଡ଼ିଛନ୍ତି । ଜଣେ ପାଶ୍ଚାତ୍ୟ ରାଜନୀତି ବିଜ୍ଞାନବିତ୍ ସ୍ୱଜେନବର୍ଗଙ୍କ ଭାଷାରେ "Diplomatic double talk" ଯେପରି ଆମ ସମାଜ ଓ ରାଜନୀତିର ଆଦର୍ଶ ହୋଇ ଉଠିଛି ଏହା ହିଁ ଏ ଦେଶରେ ଅପସଂସ୍କୃତିର କୁପ୍ରଭାବ-ଯାହା ଆମ ଦେଶର ପ୍ରଗତିର ରଥ ଚକ୍ରକୁ ଆଗେଇ ନେବା ପରିବର୍ତ୍ତେ ପଛକୁ ଟାଣି ନେଉଛି । T.S.Eliot ଙ୍କ ଭାଷାରେ "We are progressing backward." ଆଜି ଏ ସମାଜରେ ଯୁବ ସଂପ୍ରଦାୟ ମଧ୍ୟରେ ଦେଶ ପ୍ରେମ ଓ ନିର୍ଭୀକତା ଦେଖିବାକୁ ମିଳୁନି, ଦେଶମାତୃକା ପାଇଁ ଶହୀଦ ହେବାର ଦୁଃସାହସିକତା ଆଜି କାହିଁକି ଦେଖିବାକୁ ମିଳୁନି, ଆମ ଶିକ୍ଷିତ

ଯୁବସଂପ୍ରଦାୟ ମଧ୍ୟରେ ଏହା ହିଁ ଚିନ୍ତାର ବିଷୟ । ଆଜି ଆମର ଏହି ନୈତିକ ଅଧୋଗତି କଥା ଆଲୋଚନା କଲାବେଳେ ଓଡ଼ିଶାର ବରେଣ୍ୟ ଜନନାୟକ ମଧୁବାବୁଙ୍କ ଅମରବାଣୀ ମନେପଡୁଛି –

**ଜାତି–ନନ୍ଦିଘୋଷ ଚଳିବ କି ଭାଇ**
**ସ୍ୱାର୍ଥକୁ ସାରଥି କଲେ**
**ଟାଣେ କିରେ ଗାଡ଼ି ଦାନାର ତୋବଡ଼ା**
**ଘୋଡ଼ା ମୁହେଁ ବନ୍ଧା ଥିଲେ ।**

ବ୍ୟକ୍ତିଗତ ସ୍ୱାର୍ଥ ହିଁ ଆଜି ଆମର ଶିକ୍ଷିତ, ବୁଦ୍ଧିଜୀବୀ, ନେତା, ଶିକ୍ଷକ ଓ ନଗରିକମାନଙ୍କୁ ଅନ୍ଧୀଭୂତ କରି ରଖିଛି । ଯଦି ଏହି ଶିକ୍ଷିତ ସଂପ୍ରଦାୟ ଜାତୀୟତା ଓ ସାମ୍ୟ ମୈତ୍ରୀ ଭାବରେ ଅନୁପ୍ରାଣିତ ନ ହୁଅନ୍ତି, ତେବେ ଏ ଦେଶର ଓ ସମାଜର ପ୍ରଗତି ସୁଦୂର–ପରାହତ । ଆଜି ଆମକୁ ଅପସଂସ୍କୃତିରୁ ଉଦ୍ଭୂତ ଦ୍ୱୈତ ଚରିତ୍ର (Split personality)ର ମୁଖା ପୋପାଡ଼ି ଦେବାକୁ ହେବ । ଦେଶ ଓ ଜାତିର ସାମୂହିକ ପ୍ରଗତି ପାଇଁ ଗଠନମୂଳକ କାର୍ଯ୍ୟରେ ଆତ୍ମାହୁତି ଦେବାକୁ ହେବ । ଜଣେ ମାନବବାଦୀ କବି ମାୟାକୋଭସ୍କିଙ୍କ ଭାଷାରେ ଗାଇବାକୁ ହେବ –

"Whereever pain is
there am I
A single tear that is shed
I myself am crucified."

ସଂସ୍କୃତିର ସଙ୍କଟତଳେ ଏହି ମାନବିକତା, ଏହି ଦେଶ ପ୍ରେମିକତାର ପ୍ରାଣସ୍ପର୍ଶୀ ସ୍ପନ୍ଦନ ହିଁ ଆମର ନିଷ୍କ୍ରିୟତା, ବିଷାଦ ଓ ଦ୍ୱୈତ ଚରିତ୍ରର ମୁଖାରୁ ଆମକୁ ମୁକ୍ତି ଦେଇପାରିବ । ଏହି ପ୍ରତ୍ୟୟ ନେଇ ଆମକୁ ଏ ଦେଶର ପ୍ରଗତି ପଥରେ ଆଗେଇବାକୁ ପଡ଼ିବ ।*

■■■

* ଛାତ୍ର ସମାଜ ଦ୍ୱାରା ଆଦୃତ ଏକ ସାରଗର୍ଭକ ଅଭିଭାଷଣ ଯାହା ଚିନ୍ତା ଓ ଚେତନାର ଦିଗନ୍ତକୁ ପ୍ରସାରିତ କରିବ । ଦୀନକୃଷ୍ଣ କଲେଜ (ଜଳେଶ୍ୱର)ରେ ତା୯/୩/୭୯ ରିଖରେ ଅନୁଷ୍ଠିତ କଲେଜ ୟୁନିୟନର ବାର୍ଷିକ ଉତ୍ସବରେ ମୁଖ୍ୟବକ୍ତା ରୂପେ ସାହିତ୍ୟିକ ଶ୍ରୀ ଇନ୍ଦୁଭୂଷଣ କରଙ୍କ ପ୍ରଦତ୍ତ ଅଭିଭାଷଣର ଏକ ସାରାଂଶ) ।

